ବାସକାଠି

# ଶୋଭାବତୀ ହରଣ

ଜୟ ଜୟ ଦୁର୍ଗେ ମାଗୋ ଦୁର୍ଗତି ତାରିଣୀ । ଗିରିରାଜ
ନନ୍ଦିନୀ ମା ଶଙ୍କର ଘରଣୀ ॥ ପାରିନ୍ଦ୍ର ପୃଷ୍ଠ ବାହିନୀ ଜୟ ମହାମାୟୀ ।
କରିଣ କରୁଣା ବାରେ ପଦ ଦେବୁ କହି ॥ ଜୟ ଜଗବନ୍ଧୁ ନାଥ
ଭକତ ବତ୍ସଳ । ପତିତ ଜନ ତାରଣ ଦେବ ଅଦମ୍ଳ ॥ ପଦ୍ମାଳୟା
ବଲ୍ଲଭ ହେ ଗରୁଡ ଆସନ । ରଖିଲ ଗଜକୁ ପ୍ରଭୁ ମାରି ନକ୍ର ପ୍ରାଣ ॥
ଦ୍ରୌପଦୀ ଚକ୍ରବାହୁ ଲଜ୍ଜାରୁ ଦେଲ ତାରି । ଫେଡ଼ିଲ ମୁଚୁଣୀ କଷ୍ଟ
ବ୍ୟାଧିକୁ ସଂହାରି ॥ ଗୋପପୁରରେ ଅନ୍ଧକୁ ଦେଇଛ ନୟନ । କଂସ
ଟେକଟି ନାଶି ରାଜା କଲ ଉଗ୍ରସେନ ॥ ଶବରୁଣୀ ତାରିଲ ପାଚିଲ
ଆମ୍ବ ଖାଇ । ଦୀନବନ୍ଧୁ ବୋଲି ବାନା ଦେଇଛ ଉଡ଼ାଇ ॥ ଏଣୁ
ଶରଣ ପଶୁଛି ଚରଣେ ତୁମ୍ଭର । ମହିମା ସାଗର ହରି ତାର ଗା
ନଭାର ॥ ଅଗାଧ ଜଳେ ଯିବାକୁ ବଳାଇଛୁ ଆଶା । ଭର୍ସା କରେ
ସିନ୍ଧୁକୁ ବାନ୍ଧିବ ହୋଇ ଶଶା ॥ ସୂଚି ଅଗ୍ରେ ଟାଳିବାକୁ କଇଳାସ
ଗିରି । ଚନ୍ଦ୍ର ଧରିବାକୁ ଯିବେ ଖର୍ବ ହୋଇକରି ॥ ଏଥିକୁ ଆପଣ
ହେତେ ହେବ ସାହାପକ୍ଷ । ତରିବି ନିନ୍ଦା ସାଗରୁ ଉଲ୍ଲସାଇ
ବକ୍ଷ ॥ ଶୁଣ ଶୁଣ ସାଧୁଜନ ଶ୍ରୀମହାଭାରତ । ଶୋଭାବତୀ ହରଣ ଏ
ଶ୍ରବଣେ ମୁକତ ॥ ଦୋଷାଦୋଷ ଥିଲେ ମନେ ନଧରିବ ଜନେ ।
ମୁହିଁ ମୂର୍ଖ ଅପଣ୍ଡିତ ଶାସ୍ତ୍ରହିଁ ନଜାଣେ । ଗଙ୍ଗା ଯମୁନା ନଦୀ ମଧ୍ୟରେ
ତ୍ରିବେଣୀ । ଯହିଁ ବ୍ରହ୍ମା ବସି ଯଜ୍ଞ କରିଥିଲେ ଦିଢି ॥ ସେହି
ସ୍ଥାନରେ ବୈବସ୍ୱତ ବିଲଙ୍କ ରାଜନ । ପୁଚ୍ଛା କଲେ ଅଗସ୍ତିଙ୍କ
ଚରଣେ ବନ୍ଦିଣ ॥ କହ କହ ମୁନିବର ଶ୍ରୀ ମହାଭାରତ । ତୁମ୍ଭ
ମୁଖୁଁ ଶୁଣିଲେ ମୁଁ ହୋଇବି ପବିତ୍ର ॥ ଦ୍ୱାରକା ପୁର ଈଶ୍ୱର
ଦେବ ଚକ୍ରଧର । ତାଙ୍କ ଔରସରୁ ଜାତ ଯେତେକ କୁମର ॥
ସିମନ୍ତେ କା ଏକ ଏକ କନ୍ୟା ବିଭା ହେଲେ । କାବା ଦେହକ୍ଷ

Digitized by PPRACHIN, SOA

ଅବ୍ୟାହତ ହୋଇ ରହିଲେ ॥ କିଅବା ହେ ବିପ୍ର ହେଲେ ଦୂର
ଭଜ ନାହିଁ । ଏଥିର ଚରିତ ମୋତେ କହନ୍ତୁ ବିସ୍ତାରି ॥ ଶୁଣି
କୃଷ୍ଣ ତନୟ କହନ୍ତି ମନେ ହସି । ଆଜ୍ଞା ପୁଚ୍ଛା କଲ ଲଜ୍ଜା ଲାଗଇ
ବଡ଼ଶି ॥ ଏକ ମନେ ଶୁଣ ତୁ ହେ ରାଜଙ୍କ ରାଜନ । ଅଭୂତ ଚରିତ
ଏ ବିପଦ ବିନାଶନ ॥ ସ୍ୱର୍ଗପୁରରେ ଥିଲେ ସେ ନାରଦ ମୁନିବର ।
ମନେ ମନେ ବିଚାରନ୍ତି ବ୍ରହ୍ମାଙ୍କ କୁମର ॥ ବନ୍ଧୁ ହିନ୍ଦୁ କଳୋଦ୍ଭବ
ନଚଳ ଭୁଆସ । ସେଠ ପୁରୁଷାନ୍ତ ସିନା କଳହ ଦେଖିଣ ॥
କଳହ ପ୍ରିୟ ମୁନି ତ ଅଟନ୍ତି ନାରଦ । ଭାବିଲେ ଇନ୍ଦ୍ର ଗୋବିନ୍ଦ
ଲଗାଇବି ବାଦ ॥ ଏତେ ଭାବି ମୁନି ମନ ଦଣ୍ଡରେ ବସିଲେ ।
ମୁହୂର୍ତ୍ତେକେ ନନ୍ଦନ ବନରେ ପ୍ରବେଶିଲେ ॥ ତୋହର ଶୋଭାକୁ
ଦେଖି ମୁନି ପ୍ରଶଂସିଲେ । ବୃକ୍ଷାରେ କନକ ଚମ୍ପା ଗୋଟିଏ
ଧଇଲେ ॥ ମନଦଣ୍ଡେ ଗତି ହେଲେ ଦ୍ୱାରକା ନଗରେ । ପରବେଶ
ହେଲେ ଯାଦବାଙ୍କ ସଭାରେ ॥ ମୁନିଙ୍କୁ ଦେଖିଣ କୃଷ୍ଣ ନମସ୍କାର
କଲେ । କର ଯୋଡ଼ି ବ୍ରହ୍ମାସୁତ କଲ୍ୟାଣ ବାଞ୍ଛିଲେ ॥ ରତ୍ନରବ
କରି ହରି ବସାଇ ପାଖରେ । ପୁଚ୍ଛା କଲେ ନାରଦଙ୍କୁ ବିନୟ
ଭାବରେ ॥ କି କାରଣେ ଆପଣ ଆସିଲ ମୋର ପୁରୁ । କହ
ମୁନିବର ହେଉ ମୋ ସଂଶୟ ଦୂର ॥ ନାରଦ କହନ୍ତି ଆମ୍ଭେ
ଶୂନ୍ୟ ଯାଉଥିଲୁ । ତୋତେ ଦେଖିବାକୁ ଏଥି ପ୍ରବେଶ ହୋଇଲୁ ॥
ଯାଉଛୁଁ ବାବୁ ଏଥର ସ୍ୱର୍ଗପୁର ଚଳି । ଏତେ କହି ତୁରିତେ
ଗମିଲେ ତପଶାଳୀ ॥ ମୁନି ଯିବା ସମୟରେ କୃଷ୍ଣ ସୁକେଶିଣୀ ।
ନମସ୍କାର କଲେ ନାରଦଙ୍କୁ ଜଣେ ଜଣେ ॥ କଲ୍ୟାଣ କରିଣ ମୁନି
ତହୁଁ ଚଳିଗଲେ । ଚନ୍ଦ୍ରାବଣୀ ଅନ୍ତଃପୁରେ ପ୍ରବେଶ ହୋଇଲେ ॥
ମୁନିଙ୍କୁ ଦେଖିଣ ମାନ ଗୋବିନ୍ଦ ନନ୍ଦନା । ଚରଣେ ପଡ଼ିଲେ
ଛରଣ ଦଅନ୍ତି ସେନି ॥ କରଯୋଡ଼ି କଲ୍ୟାଣ ବାଞ୍ଛନ୍ତି ବ୍ରହ୍ମବେତ୍ତା ।
ଧନ ପୁତ୍ରବନ୍ତ ହୁଅ ଦୁର୍ଯ୍ୟୋଧନ ସୁତା ॥ ଶୁଣି ସେ ଶାକଳେମା
କ୍ରିନ୍ଦୁନଙ୍କୁ ଯାର । ବୁଝାଇ ନାରଦଙ୍କୁ କହଇ ଏହି ଗିରଂ ॥

Digitized by PPRACHIN, SOA

ହେ ମହର୍ଷି ତୁମ୍ଭର କଲ୍ୟାଣ ଅକାରଣ । ଆତ୍ମକୃତ କର୍ମ କାହୁଁ ଘଟିବ ସନ୍ତାନ ॥ ନାହିଁ ଜ ପ୍ରଣ ମାନଙ୍କ ବହ୍ନଷ୍ଟି ନଯାଇ । ହେ ମୁନି ମର୍ତ୍ତ୍ୟରେ ମୁଁ ଭି ପାତକୀ ଅଟଇ ॥ ଏତେ କହି ବେଦନ କରଇ ବାଳାମଣି । ନିଜ ମଥା ଉପରେ ନଚେଷ୍ଟି ଟେକି ପାଣି ॥ ସାନ୍ତ୍ୱନା ଦେଇ ରାଣୀଙ୍କୁ କହନ୍ତି ନାରଦ । କାନ୍ଦନା କାନ୍ଦନା ସ୍ଥିର ହୋଇଣ ବିଷାଦ ॥ ଭାଙ୍ଗ ତୋର ଖାମ୍ଭ ଯେ ଶ୍ରୀଶୁର ଭଗବାନ । ପିଅର ପ୍ରତାପୀ ରାଜା ନାର ଦୂର୍ଯ୍ୟୋଧନ ॥ ଦ୍ୱାରବତୀ ସମ୍ପଦରେ ଅଟୁ ତୁ ଅଗ୍ରଣୀ । ପୁତ୍ର ପାଇଁ କାହିଁକି କାନ୍ଦୁଛୁ ସ୍ୱାମିମଣି ॥ ଯେବେ ପୁତ୍ର ପାଇବାକୁ ବାଞ୍ଛା ଅଛି ତୋର । ମୋର କଥା ମାନ ଏକ ବ୍ରତ ତୁହି କର ॥ ଶୁଣି ଚନ୍ଦ୍ରାବତୀ କହେ ମୁନି ମୁଖ ଚାହିଁ । କହ କି ବରତ ମୁନି କରିବଇଁ ମୁହିଁ ॥ କି କି ଦ୍ରବ୍ୟ ଲୋଡା ହୁଏ କେବଣ ବରତ । କଲେ କି ତାହା ନିଷ୍ଟୟ ହେବ ପୁତ୍ର ଜାତ ॥ କହୁଛନ୍ତି ନାରଦ ଶୁଣ ଗୋ ରାଜଜେମା । ଚଇତ ମାସରେ ଯେବେ ପୂଜାପାରୁ ଜମା ॥ କରଯୋଡ଼ ପୁଚ୍ଛା କରେ ରାଜନ ଦୁଲଣୀ । ଚଇତ୍ର ମାସରେ କେଉଁ ପକ୍ଷେ କହ ମୁନି ॥ ନାରଦ କହନ୍ତି ଚୈତ୍ର ଶୁକ୍ଳ ପକ୍ଷରେ ॥ ଦୁର୍ଗାଙ୍କର ପୂଜା ହୁଏ ଅଷ୍ଟମୀ ତିଥିରେ । ସେଥିର ଉପଯୋଗ ଶୁଣରେ ନାରଙ୍କ୍ଷଣ । ପୂର୍ଣ୍ଣକୁମ୍ଭ ଚଇତ ସେ ଦୁବ ଏକୋଇଶ ॥ ଶ୍ୱେତ ସାଜର ଅଟୋଟି ଏକୋଇଶ ଦ୍ୱିଜ । ଖୋଡାଇ ଦାନ ଦେବୁ ସୁବର୍ଣ୍ଣ ବୋଝ ବୋଝ ॥ ଏବାଦେ ଯାହା ଟଲଡା ଶୁଣିଲେ ଚନ୍ଦ୍ରାବତୀ । ଏକୋଇଶ ସୁନାର ଗୁଞ୍ଜଲ ଥିବ ତଥି ॥ ଏକବର୍ଣ୍ଣି ଗାଭୀଙ୍କର ସ୍ୱର୍ଣ୍ଣ ଗୁଞ୍ଜଲକୁ । ବୁଡାଇ ରଖିବୁ ଦୁର୍ଗା କ୍ଷୀରେ ଢାଳିବାକୁ ॥ ପୁଣି ନାନାବିଧ ଫୁଲ ବଂଶଘାର ଥିବ । ସ୍ୱର୍ଣ୍ଣ ଚମ୍ପା ଭିତରେ ମିଶି ଏକୋଇଶ ହେବ ॥ ଯେତେବେଳେ ନାରଦ ଏସବୁ ଦେଲେ କହି । ଟଳ ପଣ୍ଡିଲୁ ତଳେ ରାଜାର ଜେମାଦେଈ ॥ ନାରଦ ବୋଇଲେ ଜେମା ବ୍ୟସ୍ତ କିପାଁ ହେଉ । କି ଦ୍ରବ୍ୟ ଅପୂର୍ବ ମୋତେ କପାଁଇ ନ କହୁ ॥ ଶୁଣି କାନ୍ଦ କହଇ ସେ

Digitized by PPRACHIN, SOA

ଦୁର୍ଯ୍ୟୋଧନ ଝିଅ । ଯେତେକ ଦ୍ରବ୍ୟ ଯୌତକ କରିଲେ ମହାଶୟ ॥ ଏମଧ୍ୟେ କନକ ଚମ୍ପା ଅଛେ ଅପୂରୁବ । ଜାଣୁଛି ସେ ଯାଇଁ ଅଉ ଏ ବ୍ରତ ନୋହିବ ॥ ଶୁଣି ହସି କହନ୍ତି ନାରଦ ମୁନିବର । ତୋର ସ୍ୱାମୀ ଅଟଇ ବୀରଙ୍କରେ ବୀର ॥ ପୃଥ୍ୱୀର କର୍ତ୍ତା ଅଟେ ତାହାର ଶ୍ୱଶୁର । ହର ଠାରୁ ଗରିଷ୍ଠ କ୍ଷତ୍ରିୟ ହଳଧର ॥ ତାତ ତୋର ଦୁର୍ଯ୍ୟୋଧନ ଖୁଡ଼ୁତା ଅର୍ଜ୍ଜୁନ । ଏ ବାଦେ ଯହିଁ ଖୁଡ଼ୁ ଭ୍ରା ତ୍ରିଦିବେ ପ୍ରଧାନ ॥ ଏପରି ସମ୍ପତ୍ତି ଥାଇ କନକ ଚମ୍ପାକୁ । ଭୟଙ୍କର ବୋଲୁଛୁ ନ କରିବ ଓପାକୁ ॥ ଏକା ତୋର ସ୍ୱାମୀ ସ୍ୱର୍ଣ୍ଣଚମ୍ପା ଗଛେ ଭର । ଆଣିବାକୁ ସମର୍ଥ ଜାଣେରେ ନାସ୍ତିବର ॥ ଚନ୍ଦ୍ରାବତୀ ବୋଲେ ସ୍ୱର୍ଣ୍ଣଚମ୍ପା କି ପ୍ରକାରେ । ଦେଖି ନାହିଁ ଆଜଯାଏ ତାହା ସ୍ୱପନରେ ॥ କପରି ମୋ ପତିଙ୍କୁ କହିବ ଚମ୍ପା ଆଣ । କହନ୍ତି ନାରଦେ ଶୁଣି ଅଳପ ହସିଣ ॥ ନିଜ ନାଅ ଚମ୍ପା ବୋଲି ଫୁଲରୁ ଛାଡ଼ିଲେ । ଚନ୍ଦ୍ରାବତୀର ହସ୍ତକୁ ବଢ଼ାଇଣ ଦେଲେ ॥ ଚିହ୍ନାଇ କନକ ଚମ୍ପା ନାରଦ ଦେବର୍ଷି । ବାହାରିଲେ ସ୍ୱର୍ଗପୁରେ ମନଜାଣେ ସି ॥ ଚନ୍ଦ୍ରାବତୀ କହଇ ଅସିବ ବ୍ରଜଦାନ । ଡକାଇଲେ ଆସିବ ହନ୍ତ ମହାମୁନ୍ୟ ॥ ମୁହୂର୍ତ୍ତେକେ ଅମରାବତୀରେ ପହଞ୍ଚିଲେ । । ଅନ୍ତେ ଶୁଣ ରାଜନ ଅଗସ୍ତି କହିଲେ ॥ ରବିରଥ ଡୁବିଲା ପଶ୍ଚିମ ଗେ ଯାଇ । ଆସିଲା ରଜନୀ ରାଣୀ କଳା ବେଶ ହୋଇ ॥ ଜାଲେ ରାଜନନ୍ଦିନୀ ରତନ ପଲଙ୍କେ । ଶୋଇଛନ୍ତି ହରଷ ଅଣ୍ଟ । ମୁଖ ମୃଗାକ୍ଷୀଙ୍କ ॥ ଏହିକାଳେ ଶାମ୍ବବୀର ହୋଇ ବେଶ ଭୂଷା । ନ୍ଦ୍ରାବତୀ ସୁରସକୁ ବଳାଇଣ ଆଶା ॥ ପ୍ରବେଶ ହୋଇଲା ଅନ୍ତଃପୁର ତରେ ଯାଇ । ଗବାକ୍ଷେ ଗୁମ୍ଫିଲ ପ୍ରିୟା ଅଛି ନିଦ୍ରା ଯାଇ ॥ କବଟେ ତମାର ଡାକଇ ଶାମ୍ବବୀର । ଫେଡ ଦ୍ୱାର ଶୋଷ ହେଲି ଦନେ ଆତୁର ॥ ଏ ବଚନେ କଲଣେ ଫେଇଲେ ଚନ୍ଦ୍ରାବତୀ । ତର ପୁରେ ହଜପୁ କୃଷ୍ଣଙ୍କ ସନ୍ତତି ॥

Digitized by PPRACHIN, SOA

## ଚୌପଦୀ

## ଶାମ୍ବ ଚନ୍ଦ୍ରାବତୀ ପ୍ରତି

ରାଗ—ଆନନ୍ଦ ଭୈରବୀ, ଏକପୁଟା

ଆରେ, ଆସ ଆସ ଚପଳାଳସୀ କାଳହାସିନୀ ଜଳାଧରାରେ ।
ଅରେ, ବସଅଙ୍କ ପଲଙ୍କ ସିଂହାସନେ ମନେ ହରଷ ଧରିରେ ॥
(ପଦ) ମାର୍ଗମାର୍ଗଶୀ ଦାଉ, ସହି ନ ହୁଇ ଅଉ, ତାର ଏ ସନ୍ତାପରୁ
ତୋଳେ ଛନ୍ଦଣି ବାହୁ, ତଣ୍ଟା ଅଧର ରସ କଷା ବରଜ ଦେହୁ,
ସମ୍ପାଦ ସୁରତ କାମନା ତୃପତକର । ୧ । ମନମଥ ସରତରୁ ଭୁରତ
ଉଦ୍ଧର ସୁପ୍ରସନ୍ନେରେ (ପଦ) ତୋ ଜାନୁ ତେଲା ବେନି,
ସଜାଇ ଦିଅ ଧନୀ; ମଞ୍ଚାଇ ରଙ୍ଗ ବକ୍ଷ ବକ୍ଷେ ଠେଲି ସଜନୀ,
ନକାଣି ଅପରାଧ, ହେଲେ ତୁ କୃପାନିଧି, କ୍ଷମିବୁ ଜାହ୍ନି ମୋର
ଦୋଷଙ୍କି ନାଗିକରେ । ୨ । ଚରଦାନ କର ପରମାନନ୍ଦେ
ପରବତ-ଜିତ କୁଚ (ପଦ) ସରଧା ବହି ଅଛି, ପରିରମ୍ଭେ
ତୃପତ, କରି ଅତି ଆଦରରେ ଚରିତାର୍ଥ ମୋ ମତ, ହେବ ଯେସନେ
ଧନ କର ବାତେର ଲେ ଗୀତ, ଦ୍ୱିଜ ଶ୍ରୀବଳଭଦ୍ର ବଦେ ମଦନରଧାରୀ । ୩ ।

---

ଗଜଦନ୍ତ ପଲଙ୍କରେ ହିଙ୍ଗୁଳର ତୁଳି । ପ୍ରିୟା ହୋଇଥିଲା ତହିଁ କର୍ପୂରର ଧୂଳି ॥ ଆଲଟ ଚାମରକୁ ଧରାନ୍ତି ସଖିଗଣେ । ମଣିବାରଣ ନିର୍ମିତ ପଲଙ୍କର କୋଣେ ॥ ଚଉହରେ ଲଗିଥିଲ ମାଣିକ୍ୟ ପ୍ରଦୀପ । ଅଧମ କବି ବର୍ଣ୍ଣିବା ବଳେ ଥାଇ କଳ୍ପ ॥ ଏପରି ଶୋଭା ପଲଙ୍କ ପରେ ଶାମ୍ବଙ୍କର । ପହୁଡିଲେ ହଙ୍ସତେ ଯେସନେ ସ୍ୱୟମ୍ବର ॥ ବିହ୍ୱଳ ବଶ ଦ୍ୱିତୀୟ ପ୍ରହର ଏକାଳକୁ । ବିଧବିଲେ ଶାମ୍ବ ପାଇ ବଲ୍ଲଭ ମେଳକୁ ॥ ଖୋଲିଲ ଚୁମ୍ବନ ଦେଇ ବହିର୍ଗ ଆଲିଙ୍ଗନ । ଚୌଷଠି ବନ୍ଧନେ ଯୋଦ୍ଧା ଶ୍ରୀକୃଷ୍ଣ ନନ୍ଦନ ॥ ନାନା ହାସ୍ୟ ରସରେ ସରିଲ୍ପ ପାର ନଶି । ଲଭିଲ କାମ ହୁତାଶ ସାନନ୍ଦ ଷୋଡଶୀ ॥ ଗୁହ୍ନିଁଲ ଏକାଳେ ଶାମ୍ବ ପ୍ରିୟାର ଆନନ । ଶ୍ରୀମୁଖ ଚନ୍ଦ୍ରମା ତାର ଦିଶିଲ

Digitized by PPRACHIN, SOA

ମଳିନ ॥ ପୁଛଇ ପ୍ରିୟାକୁ ଉଗ୍ରସେନ ଯଣିନାନ୍ତ ; କହ ବାନ୍ଧଙ୍କ
କା ଯେନ ହୋଇଛୁ ଅରତ ॥ ଶରଦ ଚନ୍ଦ୍ରମା ମୁଖ ଯାଉଅଛୁ ଶୁଖି ।
ଜାଣୁଛି ମୋର ଦୋଷ କି ମନେ ଅଛୁ ରଖି ॥ ମୁହିଁ ଜାଣିବାରେ
ହୋଇନାହିଁ ଅପରାଧୀ । ଦୋଷଥିଲେ କ୍ଷମିବୁ କି କଳୁଷା ବାରିଧି ॥
କେବଳ ଆଜ ଉରଜ ନଖ କ୍ଷତ ଦେଖି । କିବା ଅଧର ରସ ଶୁଖିଲା
ବୋଲି ଦୁଃଖି ॥ କିବା ନୀବିବନ୍ଧ ଫିଟାଇଲି ଦୋଳି ବେଷ ।
କରିଅଛୁ ସଙ୍ଗାତ ତା ହସି ହସି ଭାଷ ॥ କିଅବା କି ଚନ୍ଦ୍ରା ତୋହଠେ
ଯାଚିଲା ଏଥର । କହ ରସ ଲାଳସୀ ସଂଶୟ କରି ଦୂର ॥

# ଚୌପଦୀ

## ଶାମ୍ବ ଗୀତ

(ମନ୍ଦହାସି ମୋହନ ଆସରେ ବୃତ୍ତେ)

ଧନ କି ଲାଗି ମୋରେ ମାନରେ, ମନ ବିରସ ରସ ଧ୍ୟାନରେ,
ତୋଷ ଅଧର ରସ ପାନରେ, ଦୋଷ ନଧର ଦାସ ଜନରେ, କିସ
ତୋ ଆଦେଶ ବିଧାନରେ । ପଦ ।

ଭଣିଲେ ଶରଧା କରି ଶଶୀଙ୍କି, ଆଣିଦେବି ନଭ ମଣ୍ଡଳୁ ଟିକି,
ମାଗିଲେ ଏକ୍ଷଣ, ଦେବି ମୋର ପ୍ରାଣ, କର ପ୍ରକାଶ ମନ ବେଦନା,
ଦରହାସିରେ, ବିଧୁ ବଦନା, ମୋର ହୃଦଆନନ୍ଦ ସଦନା,
କରକଞ୍ଜ ଛତ ରଦନା, ଦରଳାକ୍ଷୀ ବନନ୍ତ ଯେନରେ । ୧ ।
ବାରମ୍ବାର ମାର ମାରଇ ଶର, ତାର ଏ ତାପରୁ ଚଉଗୁଣ ବର,
ଚମ୍ପାମାଳାଗୁନ୍ଥ, ବାନ୍ଧୁ ବଲ୍ଲଭକ, କର ମୋ କଣ୍ଠେ ଭେଶେ ବନ୍ଧନ,
ସୁରସିକ କଳିକା ନନ୍ଦନ, କରଇ ତୋର ହେନ ଯୌବନ,
ତର ତରରେ ଭୁଣ୍ଡ ବନ୍ଦନ, ହର ହର ଅଇଁଶ ଜ୍ଞାନରେ । ୨ ।
ଏ କଥୁଣା ନୋହିଲେ ଜବାଧରି, ଏକ ଝଣୋଇଶ ମିଶାଇ କରି,
ତକ ଡ଼କକରି, ପକାଇବି ସାରି, ରଙ୍କନିଧି ମୁଁ ସତ କହୁଛି,
ଦୁଃଖ ଦେଖି ମୋ ମନ ଦହୁଛି, ଯେତେ ଶାନ୍ତ ଭଜିଲେ ନୋହୁଛି,
ଧାତା ଜାଣେ ଯା ଚନ୍ଦ୍ରା ହେଉଛି, ବଳଭଦ୍ର କହେ ରଚନରେ । ୩ ।

Digitized by PPRACHIN, SOA

ଶୁଣି ଚନ୍ଦ୍ରାବତୀ କହେ ହେ ପ୍ରାଣେଶ ଶୁଣ । ନିର୍ଲଜ ଜୀବନେ ଆଉ ଅଛି କି କାରଣ ॥ ସକଳ ବୟସ ସରିଲଣି ଯଉବନ । ଏ କାଳକୁ ନ ଦେଖିଲୁ ନନ୍ଦନୀ ନନ୍ଦନ ॥ ଏ ଖେଦ ହୃଦରେ ଧରି ହେଉଥିଲୁ ଆସି । ଏ ସମୟେ ମିଳିଲେ ନାରଦ ମହାଋଷି ॥ ପଚାରିଲେ ଭଲେ ଅଛୁଟିକି ଜେମାମଣି । ମୋ ଉପଚାର କେବେ ହେଉନା ମନେ ଗୁଣି ॥ କୁହାଟି କହିଲି ମୁନି ମନେ ଅଛି ତାହା । ଦୁଃଖୀ ହେଲି ନଥିବାରୁ ତନୟ ତନୟା ॥ ନାରଦ କହିଲେ ପୁତ୍ର ପାଇଁ ଏକ ବ୍ରତ । ତାହାଙ୍କ କଥାକୁ ମୁଁ ଯେ କଲି ସନମତ ॥ ସେ କହିବା ଦ୍ରବ୍ୟ ସବୁ ମିଳେ ଦ୍ୱାରକାରେ । କନକ ଚମ୍ପା ମିଳିବ ନନ୍ଦନ ବନରେ ॥ ଏଣୁ ସେ ବ୍ରତ ନୋହିବ ଭାବି କଲି ସ୍ଥିର । ଅଣ୍ଟୁକୁଞ୍ଚ କର୍ମେ କାହୁଁ ଜନ୍ମିବ କୁମର ॥ ଏହା ଚିନ୍ତା ହୃଦେ ଧରି ହେଉଅଛି ଦୁଃଖୀ । ଏ ନିର୍ଲଜ ପିଣ୍ଡେ ପ୍ରାଣ ରହିଛି କାହିଁକି ॥ ଧନ୍ଦି କରି ଶାମ୍ବ କହେ କଦମ୍ବ ସ୍ତନାକୁ । ଭାବନା ନକର ଗୋରି ଏତୁର କଥାକୁ ॥ ତୁ ମୋହର ପଞ୍ଚପ୍ରାଣ ଅଟୁ ରେ ବାଳିକା । ତୋ ଶରଧା ଯାହା ତାହା ନିଶ୍ଚେ ଆଣିଦେବ ॥ ତୁ ଟଳାଇଲେ ଦେଇପାରେ ଜୀବନ ମୋହର । ଦିଅ ଦିଅ ବହନ ଚମ୍ପକର୍ଣ୍ଣି ନାଗିବର ॥

## ଚୌପଦୀ

### ଶାମ୍ବ ବଦାନ୍ୟକାଳେ—ରସପଞ୍ଚକ

( ରସବତୀ ଗଜଗତିକ—ବୃତ୍ତେ )

ରହିଥା ବାସେ ଜବାଧରୀ, ଯିବାକୁ ପ୍ରବାସେ ହେଲି ସଙ୍କରେ । ପଦ ।
ରଙ୍କନିଧି ମୋହର ତୋତେ, ରଖନା ଦୋଷ ଲେଶ ଚିତ୍ତେ,
ଉଚିତ୍ତ ବରଅଁ, ଉସିକାରେ ପାଞ୍ଚ, ରସାଳ କନକ ଚମ୍ପା
କାର୍ଯ୍ୟରେ । ୧ । ଶମ୍ଭୁଶିବା ପାଦରେ ସେବ, ସରଜଣ ବନସୂହିବ,
ସକଳ କଳପନା ପୂର୍ଣ୍ଣ ହୋଇବ, ସବବ ପ୍ରବାସ ନାଗିଜଳରେ । ୨ ।

Digitized by PPRACHIN, SOA

ପରବାସେ ତୋ ଗୁଣ ମନେ, ପଞ୍ଚ ସଡ଼ିଯିବ ତନେ, ପଲଙ୍କ ଅଙ୍କ କୁତୁକ କଥାଯାକ ପ୍ରବେଶି ଦେହ ତେଜବ ଦହହୀରେ । ୩ । ଚନ୍ଦ୍ରମା ନଦେଖି ଚକୋର, ଚଗଦୁଃଖି ହେଲ-ପ୍ରକାର; ଚନ୍ଦ୍ରା ରତ୍ନାକର ଉଦରେ ମୋ ଘର, ଯେଣୁ ଅଦ୍ଭୁଶଙ୍ଖ ତୋ’ ମୁଖ କଞ୍ଜରେ । ୪ । କରୁଣାମୟୁ କୃପାଲେଶ, କଲେ ଅନ୍ଧ ଧନେ ତୋ ପାଶ, କରି ପ୍ରବେଶ କନ୍ଦର୍ପ ଦର୍ପ ନାଶ, କହନ୍ତି ବଳଭଦ୍ର ଅରଜରେ । ୫ ।

---

# ଚୌପଦୀ

## ସ୍ତ୍ରୀର ବଚନ

(ଛାଡ଼ ଯାଉଛ ନାଥ ହେ ମୁଁ କାକରିବି ବୁଢ଼ୋ)

ଛାଡ଼ ନଯାଅ ନାଥହେ କରିଣ ଏକା ।
ସହିକି ପାରିବି ସ୍ମର ଶରର ଦକା । ପଦ ।

ଚକ୍ରବାକ ପକ୍ଷୀପରି, ଦୁଃଖେ ବଞ୍ଚିବି ଶର୍ବରୀ, ଝୁରି ମରିବି ସେ କାଳେ କେ ହେବ ସଖା । ୧ । ନିରତେ ନେତ୍ର ନୀରଭୁକ, ବହି ଏହି ମହୀଯାକ, ଭସି ନଦିରେ ଶୁଝିବ ହା’ କାନ୍ତ ଡ଼କା । ୨ । ପାଶୁ ଯେବେ ହେବ ଦୂର, ଖୁଆଇ ଯାଅ ଜହର, ଗୃହରେ କ କାର୍ଯ୍ୟ କାନ୍ତହୀନା ନାୟିକା । ୩ । ନୋହିଲେ ନିଅ ସାଥିରେ, ପଡ଼ୁଛି ଭୁମ୍ଭ ପଦ୍ମରେ; ବଳଭଦ୍ର ଭାଷେ ଚନ୍ଦ୍ରଣ ଗିରିଟେକା । ୪ ।

---

ପ୍ରିୟ ପାଶୁ ମେଲଣି ହୋଇଣ କୃଷ୍ଣସୁତ । ତୁରିତରେ ସଜକଲା ଚନ୍ଦମୟୁ ରଥ ॥ ବାନ୍ଧିଲା ଶଗଳ ନେତ ବିମାନ ଉପରେ । ଯୋଚ ଦେଲା ଗୁରି ଅଶ୍ୱ ଅନ୍ତ ହରଷରେ ॥ ସେ ରଥର ଶନ୍ଦ ପାହା ଶୁଣନ୍ତେ ସଜନ । ସୁବର୍ଣ୍ଣର ଗୁରିଚକ ମାଣିକ୍ୟ ତୋରଣ ॥ ରତନ ଖଞ୍ଜା ଗୂଳ ଉପରେ ବିଦ୍ୟମାନ । ହୀରି ପୁଞ୍ଜ ପୁଞ୍ଜି ତହୁଁ

Digitized by PPRACHIN, SOA

ହଣଇ ଶୋଭନ ॥ ବନା ସାରଥିରେ ରଥେ ବସିଣ କୁମର । ଚଳାଇଲା ପବନନ୍ତୁଁ ଖରେ ରହୁବର ॥ ମୁହୂର୍ତ୍ତକେ ନନ୍ଦନ ବନରେ ପ୍ରବେଶିଲ । ଶୂନ୍ୟେ ଯାନ ରଖି ତୋଟା ମଧ୍ୟରେ ପଶିଲ୍ଲ ॥

# ଚୌପଦୀ

## ବଦେଶାନୁଚନ୍ତା

( କି କରୁଥିବ ମୋ ବନା ବୃତ୍ତେ )

ଶୋଭାଙ୍ଗୀରେ ବାଭବସି ସରବ କେହ୍ନେଁ ତୋ ବନେ ।
ମୋଭ୍ରଲେ ପାଞ୍ଚ ବରଞ୍ଚ ରଚଥିଲ୍ଲ କ ଏସନେ । ପଦ ।

କର କେହ୍ନୁ ସମାଦର, ଧଶକରେ ମୋର କର, ପଶରମ୍ଭ ବାରମ୍ବାର କହବ ହରଷ ମନେ । ୧ । ଗୃହ୍ନପହ୍ନ ବାଣୀ ଭଣି, ଖହ୍ନସଦା ଚାତ୍ରକାଣି, ଅହ୍ନଭୁ ବରହ୍ମ ମଣି, ନାହ୍ନଅ ଦର୍ପ ଦଳନେ । ୨ । ଦନ୍ତି ଝୁଲ୍ଲ ଭୁଲ୍ଲଟାଣି, ଅଣ୍ଡିର କୋକିଳ ବାଣୀ, ଖଣ୍ଡି ଖଣ୍ଡି ଏ ରୁଷାଣି, ଭଣ୍ଡିବା ସ୍ୱପ୍ନ ଦର୍ଶନେ । ୩ । ରନ୍ଧ୍ର ଚନ୍ଦ୍ରବାତ ପୁରେ, ସହ୍ମିରେ ବାସ ମହ୍ମିରେ, ଥୋଇ ସୁବେଶ ହେବାରେ ମୁହିଁ ଯା ବୋଇଲ ବଚନେ । ୪ । ତୋର ମୁଁ ହୋଇଲ ଶାନ୍ତି, ତରସ୍ତେ ନେଣ ପିନ୍ଧନ୍ତି, ଚରଜରେ ନଦ୍ୱଲ୍ଲ ଧାଈ କାରଙ୍ଗେ କେଲି ସଦନେ । ୫ ।ଭାବ ବାନ୍ଧବ ସେକଥା ଥିବକ ଜୀବନେ ବୃଥା କବ ବଳଭଦ୍ର କଟେର, ଅବବେକ ହଂସାସନେ । ୬ ।

---

ବ୍ରହ୍ମଁଣ ତୋଟାକୁ ପ୍ରଶଂସଇ ଶାମ୍ବବୀର । ଧନ୍ୟ ଧନ୍ୟ ସୁରନ୍ଦର ସମ୍ପତ୍ତି ତୋହର ॥ ଶୁଣ ବଲ୍ଲଙ୍କ ବାଇନ ବଦନ୍ତ ଅଗସ୍ତି । ପ୍ରାଚୀର ନବେଢ଼ି ଛନ୍ତି ଉପବନ ଚଉକତ ॥ ଚମ୍ପା ମାଧବୀ କିଆଳ କେତକୀ ଗୋଲପ । ଫୁଟିବାଟେର ମଧୁଲୋଭେ ବେଢ଼ନ୍ତି ମଧୁପ ॥ ତଲ୍ଲଟ ଟଗର ଗଙ୍ଗଶିଉଳି ଅଶୋକ । ମନ୍ଦାର କନଅର କଞ୍ଚଣାଢ

ଅନେକ ॥ ତାଳ ତମାଳ ଯେ ନଡ଼ିକାଲ ଚୂତ ବନ । ମଧ୍ୟରେ ପରଭୃତ ରବଇ ଘନ ଘନ ॥ କସ୍ତୁରୀ ସୁବାସ ଦେଖି ପ୍ରଶଂସେ ଭ୍ରମର । ଏହା ଶୁଣି ପୁଚ୍ଛଇ ବଳିଙ୍କ ଦଣ୍ଡଧର ॥ କହ ମୁନିବର ସେ ଚରିତକୁ ବିସ୍ତାରି । ଉପବନେ କାହିଁ ବାସ ହୋଇଲା କସ୍ତୁରୀ ॥ କାହୁଁ ଏ ସମ୍ପଦକୁ ପାଇଲା ସ୍ୱର୍ଗ ଆସି । କଏ ତାଙ୍କୁ ଦେଲା କିମ୍ବା ସ୍ୱୟଂ ନ ରଖି ॥ ଶୁଣି ଅଗସ୍ତି କହନ୍ତି ଶୁଣ ହେ ରାଜନ । ପୃଥ୍ୱୀର ସର୍ବ ସଂଗ୍ରହ ବିଧାତା ଭିଆଣ ॥ ଏ ନନ୍ଦନ ବନ ପୂର୍ବଜନ୍ମ କଥା ଶୁଣ । ଖାଣ୍ଡବ ବୋଲନ୍ତି ବିଷ୍ଣୁ ଦେଇଥିଲେ ନାମ ॥ ବୃହସ୍ପତି ଯୋଗରେ ମଘବା ଲଗାଇଲେ । କମଣ୍ଡଳେ ଜଳ ବ୍ରହ୍ମା ସିଞ୍ଚେ ଦେଇଥିଲେ ॥ କସ୍ତୁରୀ ଦିଅନ୍ତି ନିତ ମୂଳରେ ଆଣି ସେ । ପଡିବା ପତ୍ର ଉଡ଼ାଇ ନିଅଇ ପବନ ॥ ଦଶସହସ୍ର ଗନ୍ଧର୍ବ ସେ ଯୋଦ୍ଧା ରଖୁଆଳ । ସର୍ବଦା ମନ୍ଦରେ ତହିଁ ବହରେ ଅନିଳ ॥ ସେ ତୋଟାରେ ବିଜୟ କରନ୍ତି ଶାମ୍ବବୀର । ଏ ଉତ୍ତରୁ ଶୁଣ ରାଜା ଆନ ସମାଚାର ॥ ସୁରତସେନ ଗନ୍ଧର୍ବ ସୁତା ଶୋଭାବତୀ । ସୁବର୍ଣ୍ଣ ନନ୍ଦନ କରେ ତାର ଦେହ କାନ୍ତି ॥ ଚମ୍ପାକଳୀରୁ ବଳି ତା ଅଙ୍ଗୁଳି ମାଧୁରୀ । ସମ୍ପୂର୍ଣ୍ଣ ଚନ୍ଦ୍ରମାମୁଖୀ ବିମ୍ବୋଷ୍ଠୀ ସୁନ୍ଦରୀ ॥ ଗଜଗତି ଗୃଧ୍ରକେଶୀ ପୀନ ପୟୋଧରା । ରସିକା ନାୟିକା କୁଳ ଶିର ଅଗ୍ରସରା ॥ ଶୁଦ୍ଧସ୍ନାନକୁ ସେ ଦିନ ସଖି ସଙ୍ଗେ ଧରି । ଆକାଶ ଗଙ୍ଗାକୁ ଆସୁଅଛି ସ୍ନାନକରି ॥ ନନ୍ଦନ ବନରେ ବାଳା ହୋଇଲା ପ୍ରବେଶ । ଦିଶଇ ନକ୍ଷତ୍ର ମଧ୍ୟେ ଯେସନେ ସର୍ବରୀଶ ॥ ବନମଧ୍ୟ ଜଳଘାଟେ ସଖି ସମାଜରେ । ଦେଖିଲା ଅଳି ବସିଛନ୍ତି ସଙ୍ଗ ସରୋଜରେ ॥ କଳକଣ୍ଠ ସ୍ୱନ ତାର କର୍ଣ୍ଣରେ ବାଜିଲା । ମଦନ ବିହ୍ୱଳେ ଜଳଘାଟରେ ବୁଲିଲା ॥ ଜନ୍ତୁ ବାହାରଣ ହିନବାସ ପରଧାନ । କରି ମୁଣି ଚଳେ ଦୃଷ୍ଟି କରେ ଅନୁଷ୍ଠା ॥ ଏକାଳକୁ କୃଷ୍ଣସୂନ କନକ ଚମ୍ପାର । ବୃକ୍ଷେ ତଳି ଫୁଲ ଫଳ ତୋଳନ୍ତି ଅପାର ॥ କାମ ଅନୁପମ ସେତ କାମଦେବ ଶର । ପଡ଼ିଛନ୍ତି ଜଳଘାଟେ ଯାଇଣ ତାର ଘୁର ॥ ଘାଇ ଗ୍ରହିଁ ପାଞ୍ଚଲ ସୁନ୍ଦରୀ

Digitized by PPRACHIN, SOA

ଶୋଭାବତୀ । ଅପଢ କି ବହ୍ନିକି ଭେଟାଇ ଦେଲ ପତି ॥ ଅଙ୍ଗକୁ ଦହିଲି କି ନିର୍ଦ୍ଧୂମ ହେଲ ଧନି । ସେହିପରି ବଗୃହିଲ ଗନ୍ଧର୍ବ-ନନ୍ଦନୀ ॥ କାମଶରେ ଝାମ୍ପାଇ ଗୃହିଲି ନପାରିଲ । ବଙ୍କସ୍ୱ ପର୍ଶ୍ୱେ ଢଳେ ପଡ଼ି ଗଣ୍ଡ ଗଲ୍ଲ । ଉଠି ରହି ଚୂଡ଼ିକ ସେ କରଇ ନିଜରୂ ॥ ବିଦ୍ୟୁଲରେ ଦିଶେ ତାଙ୍କୁ ପୁରୁଷ ଆକାର । ଚକ୍ଷୁ ତୃଣ ଦେଖିକି ଗୃହିଁଇ ଘନକେଶୀ । ପୁରୁଷର ପ୍ରତିବିମ୍ବ ଦେଉଦଗେ ଦଶି ॥ ସଖୀଗଣେ ବଅନ୍ତି ହିଅନ୍ତି ମୁଖେ ନୀର । ବୋଲନ୍ତି କସ୍ତୁରି ଗନ୍ଧ ସହ ଘନସାର ॥ ସୁବାସ ପାଇ ଦ୍ୱିଗୁଣ ପୀଡଇ ଅନଙ୍ଗ । ଦେଖିଣ ସଜ୍ଜନଗଣ ହେଲେ ଥଙ୍ଗ ଥଙ୍ଗ ॥ ସଖୀଗଣଙ୍କୁ ଗୃହିଁଣ ଭାଷଇ ମୃଗାକ୍ଷୀ । ତାର ମାର ସାଗରୁ କାନ୍ତକୁ ଦେଇ ସାକ୍ଷୀ ॥ ଜୀବିଧନଙ୍କୁ ମୋହର ନଦେଲେ ଆଣିଣ । ଜୀବ ଯିବ ନିଶ୍ଚୟ କହୁଛି କଥା ଶୁଣ ॥ ଶୁଣି ସଖୀଏ କହିଲେ ନୁହ ଟୋ ଅରତ । ଥାଅ ଅଳପ ଦିନ ଭେଟିବୁ ତୋର କାନ୍ତ ॥ ଗୃହିଲ ଚଞ୍ଚଳ ଅମର-ପୁରକୁ ଚଳିବା । ତୋ ପିତାକୁ କହି ତୋତେ ବିଭା କରାଇବା ॥ କହଇ ଶୋଭାବତୀ ନକହ ଏପ୍ରକାରେ । ଖୋଜ ମୋ ପତି ଅଛନ୍ତି ଏ ତୋଠା ମଧରେ ।

## ଚୌପଦୀ

## ସଖିପ୍ରତି ଶୋଭାବତୀ

(ଶୁଣ କଶ୍ୟପତନୁଜରେ ବୃତ୍ତେ)

ଯାଇ କହୁଯା ସଙ୍ଗମରେ ବଶବେଇକ ସେ ରସିକ ରାଜା ।
ଜଗଅରୀ ସୁନୁ, ଧରି ଫୁଲଧନୁ, ନାଶିଲ ମୋର କଳିଜା ॥
ଜାତହେଲ ବେଳୁ ବେଳ ପ୍ରବଳରେ ଜଳ ନୟନ ମଧୁଯା ।
ଜାତବେଦ ସମ ଲାଗିଲ କୁସୁମ, ମୃଗମଦ କର ଚେଇଧ୍ୟା ॥
ଜାତି ଗୋତ୍ର ମୋର, ନାହିଁତ ବିଗୃହର, ହେଲେ ହେଉ ବଶ୍ୱେଲଜ୍ଜା ॥
ଯାବତ କାଳ ଦାସୀ ହେବ ତାଙ୍କର ବହୁଛି ମୋହର ମନ୍ଥା ॥
ଜାଣିଛୁଟରେ ମିଛ, ବଡକୁଳେ ଜାତ, ଯେଣୁ ରଥେ ବନ୍ଧା ଧ୍ୱଜା ।

Digitized by PPRACHIN, SOA

ଯାଉପଛେ ଜୀବ, କେଝୁ ମୁରୁଛୁବ, ଏମଦନ ରୂପ ଗଞ୍ଜା ॥ ଯାଗ୍ରତ କରାଇ ସହଚରୀ କହ୍ନି ଟଘନରେ ପୀନ ଉରଜା । ଜାଣିଲେ ତୋ ପିତା, କାଟିବେ ମୋ ମଥା, ବଳଭଦ୍ର ଗ୍ରଷେ ଯା ଯା ॥

ଏହା ଶୁଣି ସଖିଗଣେ ବାହାର ଚଳଲେ । କାହିଁ କେଉଁ ପୁରୁଷ ବୋଲିଣ ଖୋଜା କଲେ ॥ ସେ କାଳକୁ ଶ୍ରୀକୃଷ୍ଣ ନନ୍ଦନ ମହାବଳୀ । କନକ ଚମ୍ପାର ଫୁଲଫଳ ସଙ୍ଗେ ତୋଳି ॥ ନିରେଖି ଗ୍ରହିଁଲ କାହିଁ ଖଜୁରୀ ପନସ । କାହିଁ ଆମ୍ବ ଜାମ୍ବ କାହିଁ କଦଳୀ ବଡାସ ॥ କାହିଁ କମଳା ନାରଙ୍ଗ ଛେଉଁଠାଦ ଫଳ । ପାଇ ଦଶୁଅଛୁ କେତେ ସୁନ୍ଦର ସୁତଳ ॥ ଏ ସମୟେ ଦାସୀ ଆସି ଭାଷିଲେ ବଚନ । ଆସିଅଛ କେଉଁ ଦେଶୁ ରସିକ ରତନ ॥ ଦଶୁଛତ କନ୍ଦର୍ପ ପରାୟେ ଶୋଭାବନ୍ତ । ସତକର କହ ତୁମ୍ଭେ କେଉଁ ରାଜା ସୁତ ॥ କି ସାହାସେ ପଶିଲ ଏ ତୋଠାର ଭିତରେ । ରକ୍ଷୁଆଳ ଜାଣିଲେ ପେଶିବେ ଯମପୁରେ ॥ ନନ୍ଦନ କହଇ ମୋର ପିତା ଭଗବାନ । ଦ୍ୱାରକା ଦେଶ ଆମ୍ଭର ରେ ନାରୀ ରତନ ॥ ତୁମ୍ଭେମାନେ ସହଚରୀ ତ ଅଟ ଗୋ ଅବଳା । ବୋଲାଇଛ କାହା ସଙ୍ଗେ ମଧୁବନ ଲୀଳା ॥ କି ଅବା ଏଥେ ବାସ କରିଛ କାହୁଁ ଆସି । କହ ମୋତେ ବୁଝାଇ ସକଳ ମହାଳସି ॥ ଏସନ ବଚନେ ଦାସୀ ସମସ୍ତ କହିଲେ । ହସି ସାମ୍ବାର ସବୁ ଶୁଣି ତୁନି ହେଲେ ॥ ଖାମ୍ବ ପାଶୁ ମେଲାଣି ମାଗିଣ ସଖିଗଣ । ଶୋଭାବତୀକୁ ସବୁ କହିଲେ ବୁଝାଇଣ ॥

## ଚୌପଦୀ

## ପୁରୁଷ ପ୍ରଶଂସା

ସତକହ ମିତ ହେଲ ଏ ତ କାହା କୁମର ।
ଦେଖି ଆକ୍ଷି ଲାଖି ରହିଲା ମୋର । ପଦ ।

ଶିରରେ କରୀଟି, ବାହୁରେ ବାହୁଟି, ବାମକରେ ଶୋଭା ପାଏ କେୟୂର । ରତ୍ନମୁଦ ଦେଖି, ଚଉ ଦେଲ ବାଛି, ଯୈବକା

ହୋଇ ଖଟିବ ତାଙ୍କର । ନାଗଶ୍ୱର, ନକର ଉଚ୍ଚର, କରଉପାୟ ପ୍ରାଣ ରହୁ ମୋର । ୧ । ନୋହିଲେଟି ସର ଗଲି କବାଧରି, ସାର-ହେଲା ବବେକ ଉତ୍ତର । ମାଗ୍ର ପଞ୍ଚଶର, ପିଣ୍ଡରୁ ମୋହର, ନେବ ଜୀବ ଗୃହୁଁ ଗୃହୁଁ ଏଥର । ଧରୁଛୁ କରରେ ରଜନୀ କର-ହାସି ଦଅ ଆଣି ରସିକ ବର । ୨ । ହେଉ ଯେଉଁକାଡ, ବଳଲଭ ମନ୍ତ, ଆଳି ଛଳକ ତୁ ମନା ନକର । ହେଲା ହେଲେ ଚୋର,ଘୋର ପାରାବାର ମଧ୍ୟେ ଡୁବାଇବ ଯୌବନ ମୋର । ଏହୁ ଶରୀର, ଷଣଭଙ୍ଗୁର,ପାଉ ଜୀବ ଜୀବଧବ ନାମର । ୩ । ଶୁଣି କେମବାଣୀ, ସହଚରୀ ଭଣି, ଆରତ ନୁହରେ ଚତୁରୀବର । ପିଅର ତୋହର, ଘାରଙ୍କରେ ବୀର, ଜାଣିଲେ କାଟିବେ ମୋହର ଶିର । ଭାବନା କର, କଥାକୁ ମୋର, ବଳଭଦ୍ର ଘଟେ ଗୂଲ ନଅର । ୪ ।

---

ଲେଖା ହୋଇ ଶୋଭା କହେ କହରେ ଚତୁରୀ । ରଖିବେକ ସେ ମୋତେ କଚଣ ପରଗୃହ ॥ ଦେଖିଲାବେଳୁ ମଦନ ମାର୍ଗଣ ଭୁହାଇ । ପ୍ରହାରୁ ପିଣ୍ଡକୁ ଖଣ୍ଡ ଖଣ୍ଡ କର ଦେଇ ॥ ଯାହା ହେଉ ନଦେଲେ ସେ ରସିକ ବରକୁ । ସତକର କହୁଛୁ ଛାଡ଼ିବ ଶରୀରକୁ ॥ ଏପର ଯୁବତୀର କୋକିଲଜିତ ବାଣୀ । ଶୁଣି ଶାମ୍ବୀରର ପୁଲକେ ବେମ ଶ୍ରେଣୀ । ସୁଧା-କର ବଦନା ସେ ଶ୍ରୀଫଳ ଉରଜା । ଉଲଟ ରମ୍ଭା ଜଘନା ବଶୁନାସା ଗଜା ॥ ଚମ୍ପା କଳି ଅଙ୍ଗୁଳି ସେ ମୃଗମଦ ବାସି । ଗୃହିଁ ତାକୁ ପୁରୁଷ ରତନ ପରଶଂସି ॥ ବାବଜାକ୍ଷୀ ଶୋଭାର ଶୋଭାକୁ ବର୍ଣ୍ଣିପାର । ଘାର ହେଲ ମଦନ କଦନକୁ ଭାହାର ॥ ଲୋଚନେ କାଟେ କାଣ୍ଡେ ବନ୍ଧିଲା ଫୁଲଶର । ଯେଣିକି ଗୃହିଁଲେ ଦଂଶେ ନାଗ ଆକାର ॥ ବେନୀଙ୍କର ନୟନ ବେନୀଙ୍କେ ଚୁମ୍ବି ଗଲା । ଏକାଳେ ନାଗର ପାଶେ ଶୋଭା ପ୍ରବେଶିଲା ॥

Digitized by PPRACHIN, SOA

# ଚୌପଦୀ

## ଶାମ୍ଭୁଗୀତ

( ଚୋଖ ଚତୁସ୍ପ ବୃତ୍ତେ )

ସାରଙ୍ଗ ଭ୍ରଷି, ସାରଙ୍ଗ ସାରଙ୍ଗରେ,ପଡ଼ିତ ହେଲି ତୁ ରଖରେ । ସାରଙ୍ଗ ଗମନା, ସାରଙ୍ଗ ଆନନା, ଦେଖିଚେ। ସାରଙ୍ଗ ଚୂଟକରେ । ସାରଙ୍ଗ ଗୋଷ୍ଠୀ, ସାରଙ୍ଗନନ୍ଦନା ତୁମୋର । ସାରଙ୍ଗତାପ ହରଣାର୍ଥେ ବରଣ ଲଲାମ ଦେଇଣ ଜଘିର । ୧ । ସାରଙ୍ଗ ଗ୍ରୀବାଠେର, ସାରଙ୍ଗ ଧ-ବାରେ, ସେବାରେ ଖଟିଥିବ ତୋର । ସାରଙ୍ଗ ଆଦ୍ୟ ଅକ୍ଷରରେ ନିର୍ମିତ, ଯାବତ ଶୋଭା ଅଳଂକାର । ବସି ମଣ୍ଡିବି, ଯତନେ ନୂତନ ବେଶକୁ । ସାରଙ୍ଗପତ୍ତ କଡପନ୍ତ୍ର ଘଜବ ମୋର ଏଧନନ ଶେଷକୁ ।୨। ସାରଙ୍ଗରଦନ ସୁପାଡି କଡ଼ିକି ଛଡ଼ାଇ ଚୂର୍ଣ୍ଣ ସୁପାଡକ । ମଣ୍ଡିବି ଖଣ୍ଡିବି ସାରଙ୍ଗ ବେଦନା ସାରଙ୍ଗେ ଲଭ ସୁଖ୍ୟାତିକ । ମାଗେ ଏତିକି ସାରଙ୍ଗପତି ବିପତ୍ତିକ । ଦଅନା ବଳଭଦ୍ର ବପ୍ର ଚିନ୍ତାଇ, ସାରଙ୍ଗ ଭୂଷଣ ସ୍ତୁତିକି । ୩ ।

---

ଗୃହଂଗିର ଭାଷି ରସି ଗଲ ସୁରସରେ । ଶୁଣ ବଲ୍ଲଭରଞ୍ଜନ ଏଥୁ ଅନନ୍ତରେ ॥ ମାଧବୀ ଲତିକା ତଳେ ପଲ୍ଲବ ସୁପ୍ରାନ୍ତ । କାନ୍ତ ଚିନ୍ଚପର ପକ୍ଷିଗଣେ ଗାବୁଛନ୍ତି ॥ ନାନାବିଧ କୁସୁମରେ ଚହଟଇ ଧରା । ହାସ ପରିହାସ କାନ୍ତସଙ୍ଗେ ଜବାଧରା ॥ ଦୁହିଁଙ୍କର ଭାବ ଦେଖି ଯେତେ ଦାସୀଥିଲେ । ଅପସରି ସ୍ୱର୍ଗପୁର ଯିବାକୁ ଖୋଜିଲେ ॥ ସୁଶୀଳା ବୋଲିଣ ଜଣେ ଶୋଭାର ସଙ୍ଗିନୀ । ସେହିଥିଲି ଚଳିଗଲେ ସରବ କାମିନୀ ॥ ଏହିକାଳେ ସରିଲ ଦୁହିଁଙ୍କ ରତି କ୍ରୀଡ଼ା । ଉଭା ହେଲେ ଦୁହେଁ ମନୁ ଗୁଞ୍ଜ ଦେଇ ବ୍ରୀଡ଼ା ॥ ମନ୍ଦ ମନ୍ଦ ହୋଇ ବହେ ଦକ୍ଷିଣା ପବନ । ଜଳିଲ କାମ ହୁତାଶ ତୋଷ ବେନିଜଣ ॥ କନକ ଚମ୍ପାରୁ ଭାରେ ଫଳ ଏକ ଶର । ଶୋଭାବତୀ ସଙ୍ଗେ ବସିଲେ କୃଷ୍ଣଙ୍କ କୁମର ॥ ରଥରେ ବସନ୍ତେ ଶୋଭା କହଇ କାନ୍ତକୁ । ହେ ନାଥ

Digitized by PPRACHIN, SOA

କଥାଏ ମୋର ଆଣିବା ଚିତ୍ତକୁ ॥ କନ୍ୟାଦାନ କାଳେ ଲେଡ଼ା ହୁଏ ଯଉତୁକ । ଯଉତୁକ ଭଳେ ମୋର ସଜନୀକୁ ରଖ ॥ ଶୁଣି ହସହସ ହୋଇ ଶ୍ରୀକୃଷ୍ଣଙ୍କ ବଳ । ହାତଧରି ନେଲେ ପ୍ରିୟା ପ୍ରେମେ ହୋଇ ଭୋଳ ॥ ସୁଶୀଳ କୃଷ୍ଣବଳ ଆବର ଶୋଭାବତୀ । ବସିବାରୁ କୃଷ୍ଣସୁନ୍ଦ ବାହିଲେ ଝଟତି ॥ ପବନଠୁଁ ଖରରେ ଚଳଇ ରଥବର । ଏ ସମୟେ ଶୁଣି ରାଜା ଆନ ସମାଚାର ॥ ଯିବାବେଳେ ରଥ ଘଡ଼ ଘଡ଼ ଘୋର ନାଦ । କରିବାରୁ କର୍ଣ୍ଣେ ଗଲେ ରଖୁଆଳବୃନ୍ଦ ॥ ଏ ସମୟେ ଗନ୍ଧର୍ବ-କୁମାରୀ ଗଣେ ଗଲେ । ଦ୍ୱୋଠା ରଖୁଆଳଙ୍କର ଆଗରେ କହିଲେ ॥ ଏକାବେଳକେ କହନ୍ତି ସକଳ ସହଚରୀ । ଇନ୍ଦ୍ର ନାତୁଣୀଙ୍କୁ ନେଲା କୃଷ୍ଣପୁତ୍ର ହରି ॥ ଶିର ଝୁଣ୍ଟି କହନ୍ତି ସକଳ ରଖୁଆଳ । ଆଜ ନିଶ୍ଚେ ପୂରିଲା ସେ ପାତାଳର କାଳ ॥ ରେରେକାର ଡ଼ାକଦେଇ ଅସ୍ତ୍ର ଶସ୍ତ୍ର ଧରି । ଗୋଡ଼ାଇଲେ ଆକାଶପଥକୁ ଅନୁସରି ॥ କେ ବୋଲଇ ମାର ମାର କେ ବୋଲଇ ଧର । କେ ବୋଲଇ ବାନ୍ଧିଦେବା ଇନ୍ଦ୍ରର ଆଗର ॥ କେ ବୋଲେ ପଥର ମାରି ଫୁଟାଇବା ମୁଣ୍ଡ । କେ ବୋଲେ ଫିଙ୍ଗିବ ତା ଉପରେ ବଜ୍ରକାଣ୍ଡ ॥ କେ ବୋଲେ ଶରରେ ତାର ଶିର ଛିଣ୍ଡାଇବ । ବିଲୁଆଗଣକୁ ଡ଼ାକି ଭୋଜି ଦିଆଇବ ॥ କେ ବୋଲେ ବାନ୍ଧ ତା ଗାଲେ ଦିଅ ଚୂନକାଳି । କେ ବୋଲେ ପାପିକୁ ନେଇ ଦେବା ବିଷାବଳି ॥ କେ ବୋଲେ ହାଣ୍ଡି ଗଳାଇ ବୁଲାଇବା ଦାଣ୍ଡ । କେ ବୋଲେ ଖଡ୍ଗେ ପିଣ୍ଡ କରିବା ଖଣ୍ଡ ଖଣ୍ଡ ॥ କେ ବୋଲେ ନେଇଣ ବୁଡ଼ାଇବା ତୈଳକୁଣ୍ଡେ । କେ ବୋଲେ ଛତ୍ରଶାବଳ ଭରିବା ତା ତୁଣ୍ଡେ ॥ କେ ବୋଲେ ପୋଡିଦେବା ଖୋଳାଇ ଏକଗଣ୍ଡ । କେ ବୋଲେ ଇନ୍ଦ୍ର ଆଗରେ ନେଇ ଦେବା ଦଣ୍ଡ ॥ ଏପରି ସୈନ୍ୟଗଣ ଗର୍ଜନ ପ୍ରଚଣ୍ଡ । ଶୁଣି ପଛପଟକୁ ଚାହିଁଲେ ଯଦୁଷଣ୍ଡ ॥ ଏକାଳେ ସର୍ବ ସୈନ୍ୟ ରଥ ଘେରି ପାଶ । ବେଢ଼ି ବର୍ଷନ୍ତି ମୁଦ୍ଗର ଖଡ୍ଗ ଶକ୍ତିପାଶ ॥ ବାବନ ବଜ୍ରମୁନା ପବନ ଅଗ୍ନିଶର । ଅର୍ଦ୍ଧଭାସ୍ତ୍ର ଅଗ୍ନିବାଣ ଶୂଳ ବଳାତ୍କାର ॥ ଏକା ବେଳେ

Digitized by PPRACHIN, SOA

ପେଷନ୍ତି କନ୍ୟାଗ୍ରେର ସମୀପ । କାଟନ୍ତି ଶାମ୍ବ ଦୂରୁ ହୋଇଣ ଗୁରୁ କୋପ ॥ ଶ୍ରାବଣ ମାସର ଘନ ଗର୍ଜନ ପ୍ରକାର । ଅଡଉଛ ଶବଦ ଶୁଭଇ ନିରନ୍ତର ॥ ଦଶସହସ୍ର ଗନ୍ଧର୍ବଙ୍କୁ ଏକା କୃଷ୍ଣସୁତ । ଯୁଦ୍ଧ କରି ମଧ୍ୟ କାଟୁଛନ୍ତି ନୁହନ୍ତି ପରାସ୍ତ ॥ କେ ବିନ୍ଧଇ ଚନ୍ଦଚ୍ଛେଲ କେ ବିନ୍ଧେ ମୁଦ୍ଗର । କେ ବିନ୍ଧେ ବାବଲ ବାଣ ବଜ୍ରମୁନା ଶର ॥ କେହିଁ ସର୍ପବାଣ କେହୁ ପରବତ ବାଣ । କେହୁ ପବନାସ୍ତ୍ର ବିନ୍ଧେ ଦେଖାଇଣ ଠାଣି ॥ କେ ମାରେ କୁହୁଡା ଶର କେହୁ ଅଗ୍ନିଶର । କେ ମାରଇ ପରିଘ ମାରେ କେ ବଜ୍ରଶର ॥ ଏପରି ସର୍ବ ସଇନ୍ୟ ହୋଇ କରି ଗୋଟି । ଶାମ୍ବ ବୀର ଉପରେ କରନ୍ତି ଶରବୃଷ୍ଟି ॥ ଅଧ ଦୂରୁ କାଟନ୍ତି ସେ ଶ୍ରୀକୃଷ୍ଣ ନନ୍ଦନ । ପୁଣ ପୁଣ ଗନ୍ଧର୍ବେ ଯେ ବିନ୍ଧୁଛନ୍ତି ବାଣ ॥ ଦେଖି ଶାମ୍ବ ବୀର ମନେ ବଡ଼ କ୍ରୋଧ କଲେ । କଣକୁ ଦଶ ଶର ଲେଖାରେ ପ୍ରହାରିଲେ ॥ ଆବର ବିଜେ କାର୍ତ୍ତି କଠାରି ଧରି କରେ । ମାରୁଛନ୍ତି ଗନ୍ଧର୍ବଗଣଙ୍କୁ ବୁଲୁବୁଲେ ॥ ଚଢ଼ି ଭଲେ ଗଡ଼ିଲେ ଗନ୍ଧର୍ବ ସୈନ୍ୟଗଣ । ପୁଣି କେହି କେହି ରକ୍ତ କରୁଛନ୍ତି ରଣ ॥ ଥୋକାଏ ଗନ୍ଧର୍ବ ଯାଇ ସୁଧର୍ମା ସଭାରେ । ଜଣାଇଲେ କରଯୋଡ଼ି ଇନ୍ଦ୍ରଙ୍କ ଛାମୁରେ ॥ ଭୋ ଦେବ ଶୁଣିମା ହେଉ ଅମରାଧିପତି । ଆପଣଙ୍କ ନାତୁଣୀ ସୁନ୍ଦରୀ ଶୋଭାବତୀ ॥ ଷଠତ ବର୍ଷ ହେଲା ନବଯୁବା ହୋଇଥିଲା । ଶୁଦ୍ଧସ୍ନାନାର୍ଥେ ଆକାଶ ଗଙ୍ଗାକୁ ସେ ଗଲା ॥ ସ୍ନାନ ସାରି କୂଳେ ଉଭା ହୋଇଛନ୍ତି ସୁନ୍ଦରୀ । ଏକାଳେ ଜଣେ ପୁରୁଷ ନେଲା ତାକୁ ଧରି ॥ ଦାସୀଙ୍କର ମୁଖୁଁ ଆମ୍ଭେ ବାରତା ପାଇଲୁ । ଅସ୍ତ୍ର ଶସ୍ତ୍ର ଧରିଣ ଆଗରେ ଓଗାଳିଲୁ ॥ ଘୋର ଯୁଦ୍ଧ ହେଲା ତିନି ରାତି ତିନି ଦିନ । ଏକା ହୋଇ ମାଇଲା ସେ ପାଞ୍ଚ ସହସ୍ର ସୈନ୍ୟ ॥ ଥୋକେ ଯୁଝନ୍ତି ସଙ୍ଗରେ ଆମ୍ଭେ ଯେ ଅଇଲୁ । ଛାମୁଙ୍କର ଗୋଚର ନିମନ୍ତେ ଜଣାଇଲୁ ॥ ଶୁଣିଣ ସହସ୍ର ଆଖି କମ୍ପେ ଥରହର । ଗର୍ଜନ କରି କହିଲା କାହିଁରେ ସେ ଚୋର ॥

Digitized by PPRACHIN, SOA

କେଉଁଦେଶ କି ଜାତି ସେ କାହାର କୁମର । କାହାବଳେ ପଶିଲା ରେ ଛୋଟାରେ ମୋହର ॥ କେଉଁ ବାପ ଅପିଣରେ • ରଖିବ ତାହାର । ଜାଣୁ ଜାଣୁ କାଳ ସର୍ପ ମୁଖେ ଦେଲା କର ॥ ଆବର ଶୋଭାବତୀକୁ କେଉଁଣ୍ଟ ଯେ ହରେ । ବୁଝିବା ସେ ଅଟଇ କେବଣ ଧନୁର୍ଦ୍ଧାରୀ ॥ କେତେ ସାହସେ ପାମର ଏତେ କୁତ୍ସିକଲା । ଗାରେ ବଟଧର ମୁଖେ ମୁଗ୍ଧ ଲଗାଇଲା ॥ ସିଂହ ସଙ୍ଗେ ଶଶ କରେ କରିବ ଲଢ଼ାଇ । ପାପି ହୋଇ ଯମପୁରେ ପଶଇ ଝଞ୍ଚାଇ ॥ ନଜାଣେ କି ପୁରନ୍ଦର ସ୍ୱର୍ଗପୁର ରାଜା । ଆଜ ଜାଣିବା ପାମରର କେତେକ କଲିଜା ॥ ଏହା କହି ଚନ୍ଦ୍ରସେନ ମୁଖକୁ ଚାହିଁଲା । ଯାଅରେ ନନ୍ଦନ ବେଗ ବୋଲି ଆଜ୍ଞା ଦେଲା ॥ ନମାରି ବାନ୍ଧିଣ ଆଣ ସେ କନ୍ୟା ଚୋରକୁ । ଯୋଗ୍ୟ ହେବ ନଷ୍ଟାମୃ ନୁଆଁ ବନ୍ଦୀ ଘରକୁ ॥ ପାଞ୍ଚହଜ ରଣି ତାକୁ ଶୂଳେ ବସାଇବା । ଯେଣୁ ଆସ ବୋଲି ଆଜ୍ଞା ଦିଅନ୍ତି ମଘବା ॥ ଆଜ୍ଞାପାଇ ଚନ୍ଦ୍ରସେନ ପୁଷ୍ପକ ଯାନକୁ । ସଜ କରି ରଖିଲା ସକଳ ଆୟୁଧକୁ ॥ ରଥପରେ ଚଢ଼ିଲ ଉଡ଼ଇ ଫରହର । ବଜେ ତହିଁ ବୀର ବେଶେ ଇନ୍ଦ୍ରର କୁମର ॥ କରେ ତାଳ ଯମଦାଢ଼ ପୃଷ୍ଠରେ ଭୁରଷ୍ଟ । ବାମ କରେ କୋଦଣ୍ଡ ଦକ୍ଷିଣ କରେ କାତ ॥ ମଞ୍ଜୁଳ ଦଶଇ ସାଞ୍ଜୁ ଗୋଟି ତାର ଦେହେ । ମଞ୍ଜୁଳ ମାଳେ ପଡ଼ନ୍ତି କଣ୍ଠ ଦେଶ ଯାଏ ॥ ବାନ୍ଧଅଣ୍ଟି ବୀର ନେତ ବୀର ଚନ୍ଦ୍ରସେନ । ନନ୍ଦିତ ଇନ୍ଦ୍ରବର ତାଧାର ଅପଘନ ॥ ଯୁଦ୍ଧକୁ ଅଗ୍ରସର ହେବାରୁ ଚନ୍ଦ୍ରସେନ ବଜାଇଲେ ଡିଣ୍ଡିମ ବାଜାକୁ ଦେବଗଣ ॥ ସୁର ପୁର ବାଳ ହୁଳହୁଳି ପକାଇଲେ । କେହି କେହି ଆଗେ ପୂର୍ଣ୍ଣ କୁମ୍ଭ ଥୁଆଇଲେ ॥ ଶୁଭ ଅନୁକୂଳେ ଚଳେ ଚନ୍ଦ୍ରସେନ ବୀର । ଦେଖିଲା ଦକ୍ଷିଣପଟେ ଗୋ ମୃଗ ଯେ ଭୁସୁର ॥ ବାମହୁଁ ଜମ୍ବୁକ ଦକ୍ଷିଣ ପଟେ ଯାନ୍ତି ॥ ସତ୍ୱ ଯୁଦ୍ଧେ ବଜେ ଇନ୍ଦ୍ରର ସନ୍ତତି ॥ ବନା ଅଶ୍ୱେ ରଥଚଳେ ପବନହୁଁ ଖରେ ॥ ମିଳିଲା କୃଷ୍ଣ ସୁତଙ୍କ ଆଗେ ପଲକରେ ॥ ଏକାଳେ ଯେ ଶାମ୍ବବୀର ଗନ୍ଧର୍ବଙ୍କୁ ମାରି । ଶ୍ରମ ସାରୁ ଥିଲେ ଶୋଭାବତୀ ହସ୍ତେ ଧରି ॥



Digitized by PPRACHIN, SOA

ଆକାଶରୁ ଖଣ୍ଡ ମେଘପରି ପୁଷ୍ପପାନ । ପଡ଼ଇଲ ଯହିଁଉନ୍ତ କୃଷ୍ଣଙ୍କ ନନ୍ଦନ ॥ ଚେରଚେରକାର କରି କହେ ଇନ୍ଦ୍ରର ତନୁଜ । ଆଜ ଚୋର ପାଞ୍ଚି ପୋଞ୍ଛିଲାରେ କଳୁରଜ ॥ ଶାମ୍ବ କହେ କାତରରେ ନାହିଁ କାହ୍ନୁ କାହିଁ । ଯମପୁରେ ହେବୁ ସୈନ୍ୟ ପରେ ମହାରାଜ । ଏତେ କହି ଧନୁଧର ଶ୍ରୀକୃଷ୍ଣଙ୍କ ବଳ । ମାର୍ଗଣଗଣ ବର୍ଷିଲେ ଫୁଲାଇଣ ଗଳ ॥ ଚିତ୍ରସେନ ଦୂରୁ କାଟି ଗାଣ୍ଡୀଶର ଧରି । ବାନ୍ଧି ଦୋଲ ଟଙ୍କାରେ କର୍ଣ୍ଣଯାଏ ଓଙ୍କାର ॥ ଖଣ୍ଡ ଦୂରୁ ତାହାକୁ କାଟିଲେ ନନ୍ଦନାନ୍ତ । ପୁଣି ଯନ୍ତ୍ରା ଶରକୁ ବିନ୍ଧିଲେ ଟଙ୍କଣ୍ଡ ॥ ବଜ୍ରବାଣ ପେଷି ତାହା ନାଶିଲା ଡାକନ୍ତ । ଅଗ୍ନିଶର ମାରଲେ ଶାମ୍ବ ହୋଇଣ ଗର୍ବ ॥ ଗରୁଡ଼ାସ୍ତ୍ର ପେଷିଣ କାଟିଲା ଚିତ୍ରସେନ । ଦେଖି କୁହୁଡ଼ାଶର ପେଷିଲେ କୃଷ୍ଣନାନ ॥ ସୂର୍ଯ୍ୟବାଣେ ନାଶିଲା ତା ଇନ୍ଦ୍ରର ସନ୍ତ । ପୁଣି ଅଗ୍ନି-ବାଣ ବିନ୍ଧେ ବସୁଦେବ ନାତି ॥ ଜଳଶରେ ଚିତ୍ରସେନ କାଟି ପକାଇଲା । ପରଶ ଗୋଟିଏ କୃଷ୍ଣ ପୁତ୍ରକୁ ମାରିଲା ॥ ବଜ୍ରମୂନା ଶରେ ତାହା ଶାମ୍ବ କାଟି ଦେଲେ । ଦେଖି ଚିତ୍ରସେନ କାଢ଼ିଲ ଶର ପେଷିଲେ ॥ ଜ୍ୱଳବଳୀ ବାଣରେ କାଟିଲେ କୃଷ୍ଣବଳ । ଚିତ୍ରସେନ ଏକ ଶକ୍ତି ହସ୍ତରେ ଧରିଲ ॥ ମନ୍ତ୍ରି ତାହା ଫିଙ୍ଗିଦେଲ କୃଷ୍ଣପୁତ୍ର ପରେ । ଦୂରୁ ଶାମ୍ବ ତାହା ଧୂଳି କଲେ ମେହୁଣିରେ ॥ ସିଂହ ସଙ୍ଗେ ସିଂହ ଜିବା କରଇ ସମର । ସେପରି ଯୁଦ୍ଧ କରନ୍ତି ସେହୁ ଦୁଇବୀର ॥ ଶରଯୁଦ୍ଧ ଗଦାଯୁଦ୍ଧ ମଲ୍ଲଯୁଦ୍ଧ କଲେ । କେହି କାହାକୁ ସେ ରଣେ ଜିଣି ନ ପାରିଲେ ॥ ଏପରି ଯୁଦ୍ଧ ଲଗିଲ ଚାରିଦିନ ଯାଏ । ସ୍ୱର୍ଗପୁରେ ଥାଇଣ କମ୍ପିଲେ ଦେବତାଏ ॥ ପାତାଳେ କମ୍ପିଲ ନାଗ ନୃପତି ବାସୁକି । କହ ଆଜ କିଏ ଭଗ୍ନ ନହେବ କାହିଁକି ॥ ରଥେବସି ଚିତ୍ରସେନ କରଇ ଭାବଲେଣି । ଛାର ନର ଗୋଟାକୁ ମୁଁ ନପାରିଲି ଜିଣି ॥ ଏତେ ଭାଳି ମାୟା ତିଆରିଲ ଇନ୍ଦ୍ରସୁତ । ରୁନ୍ଧିଲ କୁହୁଡ଼ା ଶର ଅଗ୍ନିଏ ମର୍ଦ୍ଦିତ ॥ ଢାଙ୍କିଲ ଅନ୍ଧାର ଅମାବାସ୍ୟା ରାତ୍ରି ପରି । ଏ ସମୟେ ଚିତ୍ରସେନ ରଥରୁ ଓହ୍ଲାଇ ॥ ଶାମ୍ବକୁ ବେଢ଼ିଲ ରଜ୍ଜୁରେ

Digitized by PPRACHIN, SOA

ବାନ୍ଧି ପକାଇଲା । ପୁଷ୍ପକ ବିମାନେ ରଖି ସ୍ୱର୍ଗକୁ ଚଳିଲା ॥ କାନ୍ଦୁଥିଲା
ଶୋଭାଧର ନେଲା ଚନ୍ଦ୍ରସେନ । ଭକ୍ତ ସୁତାକୁ ରଖିଲା ଆପଣା ସଦନ ॥
ଅଧାସ୍ୱର୍ଗରେ ରହିଣ ବ୍ରହ୍ମାଙ୍କ କୁମର । ଦେଖୁଥିଲେ ଶାମ୍ବ ଚନ୍ଦ୍ରସେନର
ସମର ॥ କେଉଁଠେ କଥା ହେଲା ବୋଲି ତୁରିତେ ଚଳିଲେ । ସୁଧର୍ମା
ସଭାରେ ଇନ୍ଦ୍ରଂ ଆଗରେ ମିଳିଲେ ॥ ସଭା କରି ବସିଅଛି ସ୍ୱର୍ଗର
ନୃପତି । ପାଞ୍ଜିକାର ପଢଣେ ଗଣିଛନ୍ତି ବୃହସ୍ପତି ॥ ତେତିଶ କୋଟି
ଦେବତା ଅଗ୍ନି ନଇରୁତ । ସୂର୍ଯ୍ୟଚନ୍ଦ୍ର ଯମ ଶିବ କୁବେର ମରୁତ ॥
ଗନ୍ଧର୍ବକିନ୍ନର ଯକ୍ଷ ରକ୍ଷ ବିଦ୍ୟାଧର । ବିଜେ ଦେବ-କୁଳଧର ସେ
ସଭା ମଧ୍ୟର ॥ ଆଲଟ ଚାମର ଛତ୍ର ଦାସ ସଂଖ୍ୟାନାହିଁ । ମାଳ ମାଳ
ଚମ୍ପଲ ଯେ ସମ୍ମୁଖରେ ଉଡଇ ॥ ନୃତ୍ୟ ଗୀତ କରନ୍ତି ଯେ ରମ୍ଭା
ତିଲୋତ୍ତମା । ମେନକା ଉର୍ବଶୀ ଆଦି ସର୍ବ ସ୍ୱର୍ଗବାମା ॥ ଏ ସମୟେ
ଚନ୍ଦ୍ରସେନ କୃଷ୍ଣ ସୁତ ଘେନି । ଚରଣ ତଳେ ପଡିଲା ହୋଇଣ
ଦଇନୀ ॥ ଉଠି ଦୁଇ ହାତ ଯୋଡ଼ି କଷେ ଅତିଦେଇ । କହଇ
ଚନ୍ଦ୍ରସେନ ଶୁଣିମା ସଚୀସାଇଁ ॥ ତୋର ଆଜ୍ଞା ପ୍ରମାଣେ ମୁଁ ଆଣିଲି
ଚୋରକୁ । ଏଣିକି କରିବ କର ଯେ ପ୍ରତିକାରକୁ ॥ କୁମରକୁ ଦେଖି
ଚକ୍ଷୁ ଟେକି ପ୍ରାୟେ କରି । କମ୍ପାଇଣ ଦେହକୁ ପୁଚ୍ଛଇ ବଜ୍ରଧାରୀ ॥
କିଏ ତୁରେ କାହାର ନନ୍ଦନ ପାଜି ଚୋର । କେଉଁ ବାପ ବଳେ
ଏତେ ଭରସା ତୋହର ॥ ମେଅଣ୍ଡ ଟୋକା ଖଣ୍ଡ ତୁ ଏତେ ରଙ୍ଗ
ଜାଣୁ । ଶୋଭାବତୀକୁ ହରଣ କଲୁ କି କାରଣୁ ॥ ଆବର ଦୋଠାରେ
ପଶି କଲୁ ନାରଖାର । ମାଇଲୁ କି ଗର୍ବେ ରଖୁଆଲଙ୍କୁ ମୋହର ॥
କୃଷ୍ଣ ପୁତ୍ର କହନ୍ତି ଶୁଣରେ ମଘବାନ । ମୁ ତୁମ୍ଭ ଛୁଆଁ ହେଁ ମୋତେ
ଭଲ ରୂପେ ଚିହ୍ନ ॥ କରି ବିବାହ ବିଧାନ ବ୍ରାହ୍ମଣଙ୍କୁ ସଇ । ଦିଅ
ପଉତୁକ ହେଲା କରୁ କାହିଁ ପାଇଁ ॥ ଅବିବାହି କରିଣ କନ୍ୟାକୁ
ରଖିଥିଲୁ । ଭାଗ୍ୟବଳେ କୃଷ୍ଣପରି ସମ୍ବନ୍ଧ ପାଇଲୁ ॥ ଏହା ଶୁଣି
ବାତେ ରମ୍ଭାପତି କମ୍ପାଯାଇ । ଥରଇଣ ଦେହକୁ କହଇ ବଜ୍ରଧାରୀ ॥
ଛୁ କାରେ ଗଉଡ ପିଲା ବଜ୍ଜାରେ କହୁ । ଗାଈଜଗାପିଲା ବୋଲି

Digitized by PPRACHIN, SOA

ଲଜ୍ଜାକ ନ ପାଉ ॥ ବାପ ଚୋର କଟଣ୍ଟରେ ଅନେକ ଅନ୍ୟାୟ । ଭୂକ ନକରିବୁ ହୋଇ କରି ତାକୁ ମୁଁ ॥ ଫଳଇ କି ଫଳ ବୃକ୍ଷେ ଆକୃ କନ୍ଦମୂଳ । ରାଜାରେ ନିଜ କାର୍ଯ୍ୟ କ ନକରେ ଶୃଗାଳ ॥ ସ୍ୱଭାବକ ଗ୍ରୁଡ ଦେବ ସର୍ପ ଇନ୍ଧ ହୋଇ । ଏଣୁ କରେ ମୋର ଆଗେ କହନ୍ତି ବଡ଼ାଇ ॥ ବହାହୋଇ ନ ଯାଉଛୁ ଗାରମା ତୋହର । ବେଳୁ ବେଳ ବଢମାରେ କହୁଅଛୁ ଗିର ॥ ଏତେ କହ ଶାମ୍ବକୁ ସେ ପୁର-ନ୍ଦର ରଜା । ଚିତ୍ରସେନକୁ କହଇ ଏଠାରୁ ନେଇଯା ॥ ମୂଢ଼ ଗଉଡ଼ ପିଲକୁ ବସାଇବୁ ଶୂଳେ । ରଖିଲେ ରଖ ତା ବାପା ଆସି ଏହି କାଳେ ॥ ନିଅ ନିଅ ବୋଲନ୍ତେ ଧଇଲା ଚିତ୍ରସେନ । ଦେଖି ଇନ୍ଦ୍ରଙ୍କୁ କହନ୍ତି ବ୍ରହ୍ମାଙ୍କ ନନ୍ଦନ ॥ ଭୂଲ ନ ଜାଣୁ ମଘବା ନ୍ୟାୟବନ୍ତ ହୋଇ । ସମସର ଯୋଦ୍ଧା ଯିବା ଯୋଦ୍ଧାକୁ ମାରଇ ॥ ଏହାଶୁଣି ଇନ୍ଦ୍ରଙ୍କୁ କହନ୍ତି ସଦାଶିବ । ଆଗହୁଁ ଗଉଡ଼ କଲୁ ଲାଞ୍ଚ ଦେଇଥିବ ॥ କଳହପ୍ରିୟ ମୁନି ତ ଅଟେ ଏ ନାରଦ । ଏଣୁ ତେଣୁ କହି ଲଗାଇ ଦଅଇ ବାଦ ॥ ଉଚ୍ଚରେ ଜନମ ହୋଇ ନୀଚ କାର୍ଯ୍ୟକରେ । ତେଣୁ ମଧ୍ୟମ ହୋଇଛୁ ଏହି ସମସ୍ତରେ ॥ ନିଅ ଗଉଡ଼ ପିଲକୁ ନକରିଣ ହେଳା । ଶୂଳେ ବସାଅ ନୋହିଲେ କାଟିଦିଅ ଗଳା ॥ ନାରଦ କହିଲେ କିପାଁ ଧିକ୍କାର ଶଙ୍କର । ନଗଲା ଅଗତ ବୁଢ଼ା ସ୍ୱଭାବ ତୁମ୍ଭର ॥ କହୁ ଥିଲ ମୁହିଁ ଏତ ସ୍ୱଭାବେ ବାଳକ । ଜୀବନେ ନମାର ବନ୍ଦିଘରେ ନେଇ ରଖ ॥ ତା ବାପା ଗୋବିନ୍ଦ ଯେବେ ବିନୀୟ ହୋଇବ । ତେବେ ଦୟା କରି ତାକୁ ଛାଡ଼ିବ ବାସବ ॥ ଏହା କହୁ କହୁ କିପାଁ ଧିକ୍କାରିଲୁ ଭୂଢ଼ । ଶୁଣି ଏହା ଯଥାର୍ଥ ବୋଇଲା ଶଚୀସାଇଁ ॥ ଚିତ୍ରସେନକୁ ଅନାଇଁ ଇନ୍ଦ୍ର ଆଜ୍ଞା ଦେଲ । ନିଆଁ ବନ୍ଦୀ ଘରେ ଯାକୁ ରଖରେ ବୋଇଲ ॥ ବନ୍ଦୀଘରେ ରହିଲେ ତ ସେ କୃଷ୍ଣଙ୍କ ସନ୍ତତି । ମନେ ମନେ ଭାଳନ୍ତି ସେ ନାରଦ ମହାମତି ॥ କେଉଁ ଗଉଡ଼ କରି କହିଲା ସଦାଶିବ । ଆବର ଇନ୍ଦ୍ର ହେଉଛୁ ଯେତେ ପରାଭବ ॥ ହତ ଘଟଣେ ଲଗାଇ

Digitized by PPRACHIN, SOA

ଗରବ ଭାଙ୍ଗିବି । ହରଷରେ ଏବେ ପ୍ରଭାବତୀ ପୁରେ ଯିବ ॥ ମନେ
ମନେ ଭାଳି ସେ ନାରଦ ତପଶାଳୀ । ମନ ଯାନେ ଚଢ଼ି ଦ୍ୱାରକାକୁ
ଗଲେ ଚଳି ॥ ସେ କାଳକୁ ସଭାକରିଛନ୍ତି ହୃଷୀକେଶ । ଦ୍ୱାରୀ
ଜଣାଇଲା ଯାଇ ଶ୍ରୀକୃଷ୍ଣଙ୍କ ପାଶ ॥ ଉଦ୍ଧବ କାନ୍ଧରେ ହରି ଦେଇଛନ୍ତି
କର । ଦକ୍ଷିଣ ହସ୍ତକୁ କାନ୍ଧେ ବହିଛନ୍ତି ଅକ୍ରୁର ॥ ଛପନ କୋଟି
ଯାଦବ ଉଗ୍ରସେନ ସଙ୍ଗତେ । ଆବର ଲକ୍ଷେ ଷାଠିଏ ସହସ୍ର
ଅଛି ସୁତେ ॥ ବଳରାମ ଅଛନ୍ତି ସଭାରେ ବିରାଜି ହୋଇ । ମଣିମା
ମଣିମା ଡାକ କରନ୍ତେ ଶୁଭଇ ॥ ଏକାଳେ ଯାଇଁ ମିଳିଲେ ବ୍ରହ୍ମାଙ୍କ
କୁମର । ସ୍ୱମଙ୍କୁ ଗୁଡ଼ ସର୍ବେ ହୋଇଲେ ନମସ୍କାର ॥ ଆସନେ
ବସାଇ ହରି ପୁଚ୍ଛନ୍ତି ସଧୀରେ । କି କାରଣେ ମହର୍ଷି ଆଗତ ମୋର
ପୁରେ ॥ ଆଉଦିନକ କି ଶୁଭେ ନିଶି ପାହିଥିଲି । ନାରଦ ପଦ ରଜ
ମୋ ସଭାରେ ପଡ଼ିଲା ॥ ଶୁଣି ନାରଦ କହନ୍ତି ଧନ୍ୟ ମୋ ଜୀବନ ।
ସ୍ୱୟଂ ପରଂବ୍ରହ୍ମ ମୂର୍ତ୍ତି କଲି ମୁଁ ଦର୍ଶନ ॥ ଏହି ମାତ୍ର ପରସ୍ପରେ
ହରଷ ହୋଇଲେ । କି କାରଣେ ବିଜେ ବୋଲି ଶ୍ରୀକୃଷ୍ଣ ପୁଚ୍ଛିଲେ ॥
ନାରଦ ବୋଲନ୍ତି ଆମ୍ଭେ ସ୍ୱର୍ଗ ପୁରେ ଥିଲୁ । ତୋ ନନ୍ଦନ କଣ୍ଟୁ
ଦେଖି ସହି ନ ପାରିଲୁ ॥ ବିଙ୍ଗାଷିଣ ତଳେ ଯେତେ କହିଲା ମଘବା ।
ଆବର ହରି ନିନ୍ଦିଲା ତାହାକୁ କହିବା ॥ ପଥର ହେଲେ ଫାଟିଣ
ଦୁଇ ଖଣ୍ଡ ହେବ । ତାହା ମୁଁ ସହି ଅଛିଲି ଶୁଣ ହେ ମାଧବ ॥
ବୋଇଲା ଇନ୍ଦ୍ର ସେ ବିନ୍ଦ ସହିତେ ଗଉଡ଼ । ଗାଈଜଗା ବୁଦ୍ଧି ତାର
ସ୍ୱଭାବଟି ମୂଢ଼ ॥ ମାଇଁ ବୋଲି ନଡ଼ାବି ହରିଲା ବାରମ୍ବାର । ଯେନ୍ତୁ
ଷଣ୍ଢ ମାରି ପାପ ବହନ୍ତି ଅପାର ॥ ବଣବୁଲାଜାତି ସେତ ମର୍ତ୍ତ୍ୟରେ
ଅମାନ୍ତ । କରନ୍ତି ଧର୍ମକୁ ତାର ତଳେ ନାହିଁ ଗୀତ ॥ ବଡ଼ ବଡ଼ ଉଲ୍ଲ
ହିଁଅ ଚୋରାଇ ଆଣନ୍ତି । ଯେତେ ଶାସ୍ତି ପାଇବ ସେ ସେତିକି
ବଢ଼ୁଛି ॥ ଏଥରକେ ବଡ଼ିମା ଭାଙ୍ଗିବ ମୁହିଁ ତାର । ଏପରି କଟୁ
କଥା କହିଲେ ଇନ୍ଦ୍ର ହର ॥ ଶୁଣି ଚକ୍ରପାଣି ଚଢ଼ ପରଶ୍ୟେ ନୟନ ।
ଭୁଲଇ ପଚ୍ଚାରନ୍ତି କହ କହ ମହାମୁନ୍ୟ ॥ କେବଣ ସୁତ ମୋହର

Digitized by PPRACHIN, SOA

କେଉଁ କୃତ୍ୟ କଲା । କି କାରଣେ ଇନ୍ଦ୍ର ମୋର ପୁତ୍ରକୁ ବନ୍ଦିଲା ॥ ନାରଦେ କହନ୍ତି ଶୁଣ ହେ ମଧୁସୂଦନ । ତୁମ୍ଭ ପୁତ୍ର ଶାମ୍ବ ଗଲା ନନ୍ଦନ କାନନ ॥ କନକ ଚମ୍ପା ଆଣିଲେ ହେବ ବୋଲି ବ୍ରତ । କହିଥିଲା ତା ପ୍ରିୟା ଦୁର୍ଯ୍ୟୋଧନ ଦୁହିତ ॥ ତୋଳୁଥିଲା ଫୁଲ ଶାମ୍ବ ଏହି ସମୟରେ । ସୁରଭଟସେନର ଝିଅ ଗଲା ସେ ପଥରେ ॥ ପରମା ସୁନ୍ଦରୀ ସେ ଯେ ଇନ୍ଦ୍ରର ନାତୁଣୀ । ଅବିବାହୀ ଥିଲା ସେ ନାଗରୀ ଶିରୋମଣି ॥ ସୁନ୍ଦର ଦେଖି ସେ ବାଳୀ ସ୍ମରିଲା ତୁମ୍ଭର । ବରଣ କଲା କଣ୍ଠରୁ ଦେଇ ରତ୍ନହାର ॥ ତା ପ୍ରେମେ ଆବଦ୍ଧ ହୋଇ ତୁମ୍ଭର କୁମର । ଦ୍ୱାରକାକୁ ଆଣୁଥିଲା ଘେନି ରଥବର ॥ ଏକାଳରେ ଚେଡ଼ା ରକ୍ଷୀ ଆସି ଗୋଳକଲେ । ଶାମ୍ବବୀର ଶରେ ସର୍ବେ ଜୀବନ ହାରିଲେ ॥ ବାରତା ପାଇଣ ଇନ୍ଦ୍ର ଅତି କୋପ କଲା । ତାର ସୁତ ଚିତ୍ରସେନ ବୀରକୁ ପେଷିଲା ॥ ଦୁହିଁଙ୍କର ଘୋର ଯୁଦ୍ଧ ହେଲା ସେହି ଠାରେ । ବାନ୍ଧିନେଲା ଚିତ୍ରସେନ ଶାମ୍ବକୁ ମାୟାରେ ॥ ଯାହା ଜଣା ଥିଲା ତାହା କହିଲିଟି ମୁହିଁ । ବିଚାର ଏଥି କାର୍ଯ୍ୟକର ଭବଗ୍ରାହୀ ॥ ଶୁଣି ଉଗ୍ରସେନକୁ କହନ୍ତି ନନ୍ଦବଳା । ସାଜ ସାଜ ସୈନ୍ୟ ଆଜ ନକରଣ ହେଳା ॥ ଦ୍ୱାରକାରେ ଘୋଷଣା ଦିଅନ୍ତି ହୃଷିକେଶ । ଯିବା ସ୍ୱର୍ଗ ଯୁଦ୍ଧକୁ ବହନ ହୋଇଆସ ॥ ବାଜିଲା ଢୋଲ ଦମା ଟମକ ବାଦ୍ୟ ଭେରୀ । ଶଙ୍ଖ ତେଲିଙ୍ଗୀ ବାଜା ବାଜନ୍ତି ଆଦିକରି ॥ ଧାଆନ୍ତି ଯାଦବ ବଳ ତୁରଙ୍ଗ ଆରୋହି । କେ ବିମାନେ ବସେ କେ ଚଳଇ ଡେଇଁ ଡେଇଁ ॥ କେହୁ ଚର୍ମ ମାରିଧାଏଁ କେହୁ ଛତ୍ର ଧରି । କେ ଧନୁଶର କେ ଧରିଅଛନ୍ତି ତରବାରି ॥ କେବଣ ଯାଦବ ଶୂଳ ହସ୍ତରେ ଧରନ୍ତି । ଇନ୍ଦ୍ରଙ୍କୁ ମାରିବା ପାଇଁ ପ୍ରତିଜ୍ଞା କରନ୍ତି ॥ ଏକାଳେ ସାତ୍ୟକିକୁ କହିଲେ ଚକ୍ରଧର । ବହନ ଚଳରେ ବାରୁ ବାରୁଣୀ ନଗର ॥ ଆମ୍ଭ ଆଜ୍ଞା ବୋଲି କହ ଯୁଧିଷ୍ଠିର ପାଶ । ବୁଝାଇବା ମାରିବାକୁ ସକଳ ତ୍ରିଦଶ ॥ ଚର ପଠାଇଲେ ଶୀଘ୍ର ହସ୍ତିନା ପୁରକୁ । ଶୁଭ ଅନୁକୁଳେ ସାଜ ଯୁଦ୍ଧକୁ ଯିବାକୁ ॥ ତାଳଧ୍ୱଜ ରଥେ ବଳଦେବ ବିଜେ କଲେ ।

Digitized by PPRACHIN, SOA

ନନ୍ଦଘୋଷ ବିମାନରେ ଗୋବିନ୍ଦ ବସିଲେ ॥ ରାଜନ ଉଗ୍ରସେନ ତାଙ୍କୁ ଆରୋହିଲେ । ଅକ୍ରୁର ଉଦ୍ଧବ ଯେତେ ପୃଷ୍ଠରେ ବସିଲେ ॥ ଏଥୁ ଅନ୍ତେ ଶୁଣ ରାଜା ଆନ ସମାଚାର । ସଙ୍ଗନ୍ୟ ସଜଦେଖି ନାରଦ ମୁନିବର ॥ ମନଯାନେ ଚଢ଼ି ଇନ୍ଦ୍ର ସଭାରେ ମିଳିଲେ । ମୁଖ ଶୁଖାଇ ଇନ୍ଦ୍ରକୁ ଏପରି କହିଲେ ॥ ଆରେ ବାବୁ ମଘବା ସୁରଲ ତୋ ବିଭୂତି । ମହାରୋଷ କରିଛି ତୋଠାରେ ଶିଖିପତି ॥ ବୋଇଲା ଇନ୍ଦ୍ରକୁ ଆଜ ଯୁଦ୍ଧରେ ମାରିବି । ନୂଆଁ ଇନ୍ଦ୍ର କରି ସ୍ୱର୍ଗପୁରେ ବସାଇବି ॥ ମାରିବି ଶିବ ନାମ ପୃଥ୍ୱୀରୁ ଆଜ ମୁହିଁ । ରଖୁ ସିପୁରେ କେ ଜଣେ ଧନୁର୍ଦ୍ଧାରୀ ହୋଇ ॥ ଏପରି ଘୋର ପ୍ରତିଜ୍ଞା କଲି ଭଗବାନ । ସେପରି ପ୍ରତିଜ୍ଞା ମଧ୍ୟ କଲି ସଂକର୍ଷଣ ॥ ଶୁଣି ଇନ୍ଦ୍ର ରାଗେ କହେ ନାରଦଙ୍କୁ ଚାହିଁ । ଗରୁଡ଼ ବଡ଼ମା: ମୁନି କହିଲ କିପାଇଁ ॥ ଆଗରୁ କି ଲଜ୍ଜା ଆଣି ଦେଲା ଗରୁଡ଼ଟି । ତେଣୁ ତା ପର କାନ୍ଧୁ ଛିଣ୍ଡାଇ ଆଣ୍ଠୁ ରଣି ॥ କଳହ ପ୍ରିୟ ମୁନି ଯାଅରେ ଦୂର ହୋଇ । ଏଣିକି ମୋ ସଭାକୁ ନଆସ କେବେ ତୁମ୍ଭେ ॥ ଏପରି ଅପମାନ ପାଇଣ ବ୍ରହ୍ମାସୁତ । ମନେ ମନେ ଅନ୍ତଶସୁ ହେଲେ ରାଗାନ୍ୱିତ ॥ ବୋଇଲେରେ ଇନ୍ଦ୍ର ଜାଣିବା ତୋ ଗର୍ବ ପଣ । କେମନ୍ତେ ନ ଧରିବୁ ତୁ ଗରୁଡ଼ ଚରଣ ॥ ଏପରି ଭାବି ମୁନି ବାଲୁଣାବନ୍ତକୁ । ଚଳିଲେ ଯାଜଣ ନିଜ ମନ ବିମାନକୁ ॥ ମୁହୂର୍ତ୍ତେକେ ବାଲୁଣାବନ୍ତେରେ ପ୍ରବେଶିଲେ । ଦେଖି ଯୁଧିଷ୍ଠିର ରାଜନ ନମସ୍କାର କଲେ ॥ ପାଦେ ପଡ଼ିଲେ ଭୀମ ନକୁଳ ଫାଲ୍‌ଗୁନି । ସହଦେବ ସମ୍ଭ୍ରମେ ସକଳ ସଇନି ॥ ଯୁଧିଷ୍ଠିର ରାଜନ ଯେ ଆସନ ଦାନଦେଲେ । କିକାର୍ଯ୍ୟେ ମୋପୁରେ ମୁନି ବିଜୟ ପୁଚ୍ଛିଲେ ॥ ଶୁଣିକରି ରାଜାକୁ କହନ୍ତି ବ୍ରହ୍ମାବାଳ । ଏକ ମନେ ଶୁଣ ତୁ ହେ ଯୁଧିଷ୍ଠିର ଭୂପାଳ ॥ ଇନ୍ଦ୍ର ଗୋବିନ୍ଦଙ୍କର ହୋଇବ ଘୋର ରଣ । ଗୋବିନ୍ଦ ସେ ପାଇଁ ତୋତେ କରିବେ ବରଣ ॥ ଇନ୍ଦ୍ର କହିଲେ ନଯିବୁ ଥାଅ ହେତୁ କରି । ଯୁଧିଷ୍ଠିର

Digitized by PPRACHIN, SOA

ପ୍ରଚ୍ଛନ୍ନ କହ କହ ତପସ୍ୱୀ ॥ କି କାରଣେ ହେବ ଇନ୍ଦ୍ର ଗୋବିନ୍ଦଙ୍କ ରିପୁ । ବୁଝାଇ କହନ୍ତୁ ମୋତେ ସେହି ବିବରଣ ॥ ମୁନି କହନ୍ତି ଗୋବିନ୍ଦ ସୁତ ଶାମ୍ବବୀର । କନକ ଚମ୍ପା ନିମନ୍ତେ ଚଳିଲେ ସତ୍ୱର ॥ ନନ୍ଦନ ବନରୁ ଚମ୍ପା ଆଣିବା ବେଳରେ । ଇନ୍ଦ୍ରର ନାତୁଣୀ ଶୋଭାବତୀ ଥିଲା ସେଠାରେ ॥ ରଥେ ଘେନି ଆସୁଥିଲେ ଚୋଠା ରଖୁଆଳି ॥ ଓଗାଳନ୍ତେ ଭେଟିଲେ ଶମନ ମହୀପାଳ ॥ ଚର ମୁଖୁ ଶୁଣି ଇନ୍ଦ୍ର ଚିତ୍ରସେନ ଘଇ । ପଠାଇଲା 'କନ୍ୟାଚୋରର ବନ୍ଧନେବା ପାଇଁ ॥ ଘୋର ଯୁଦ୍ଧ ହେଲା ଚିତ୍ରଦାନ ଚିତ୍ରରଥ । ମାୟାରେ ବନ୍ଧନ କଲା ଇନ୍ଦ୍ରର ସନ୍ତତ ॥ ଶୁଣି ଯୁଧିଷ୍ଠିର ବୋଲନ୍ତି ଇନ୍ଦ୍ରର ଅନ୍ୟାୟ । ନବୁଝି କେହେ ବାନ୍ଧିଲା କୃଷ୍ଣଙ୍କ ତନୟ ॥ ଜାଣୁ ଜାଣୁ ବଜ୍ରଧର ମୁଖେ ଦେଲା କର । ପ୍ରଚଣ୍ଡାନଳେ ଯିବାକୁ ଚାହିଁଲା ମନର ॥ ପୁଣି ଯୁଧିଷ୍ଠି କହନ୍ତି ମୁନି ମୁଖ ଚାହିଁ । ଯେବେ ଆମ୍ଭଙ୍କୁ ଲଙ୍ଘିବେ ଦେବ ଶଚୀସ୍ୱାମୀ ॥ ନିଶ୍ଚୟ ଯିବୁ ନଯିବୁ ବାସବ ଭରିଲେ । ଏହା ଶୁଣିଣ ନାରଦ ଆନନ୍ଦ ହୋଇଲେ ॥ ଏକାଳେ ମିଳିଲ ତହିଁ ଦ୍ୱାରକାର ଚାର । ଦେଖି ଶ୍ରଦ୍ଧା ହୋଇଲେ ନାରଦ ଯୁଧିଷ୍ଠିର ॥ ବାଜୁଣାବନ୍ତ ନଗରେ ଘୋଷଣା ଦିଆଇ । ସଜାକଲେ ସୈନ୍ୟ ସେନାଗଣେ ତ୍ୱରା ହୋଇ ॥ ବାଜିଲା ଭେରି ତୁରି ନିଶାଣ ଯେ ଠମକ । ସାଜି ହେଲେ ବେଶଭୂଷା ସକଳ ପାଇକ ॥ ସାତ ଅକ୍ଷୌହିଣୀ ସୈନ୍ୟ ରଥୀ ଯେ ସରଧାର । ରଜତ ମାହୁନ୍ତ ପଟୁଆର ପରିକାର ॥ ମାଳ ମାଳ ନିଶାଳ ଯେ ଉଡ଼ଇ ଆଗରେ । ଝୁଲଝୁଲି ଜଳୁଳଇ ନଗର ମଧ୍ୟରେ ॥ ପୂର୍ଣ୍ଣକୁମ୍ଭ ବୈଶ୍ୟମାନେ ଦ୍ୱାରେ ରଖାଇଲେ । ସର୍ବଶୁଭେ ପାଣ୍ଡବେ ଦ୍ୱାରକା ବିଜେ କଲେ ॥ ଚାର ମୁଖୁ ଦୁର୍ଯ୍ୟୋଧନ ରାମ ଆଜ୍ଞା ପାଇ । ଏଗାର ଅକ୍ଷୌହିଣୀ ସୈନ୍ୟ ତୁରିତେ ସାଜଇ ॥ ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ସହ ଅଶ୍ୱତ୍ଥାମା । ଭୂରିଶ୍ରବା ଜୟଦ୍ରଥ ରଥୀ କୃପବ୍ରହ୍ମା ॥ ତେରକୋଟି ବାଦ୍ୟକାର ବୀର ଅକଳନା । ରଜତ ମାହୁନ୍ତ ସରଧାର ସର୍ବ ସେନା ॥ ଦଶଲକ୍ଷ ମତ୍ତହସ୍ତୀ ଅଯୁତେ ପଦାତି ।

Digitized by PPRACHIN, SOA

ପଦାନ୍ତ । ଅନେଶ୍ୱତ ଭ୍ରାଇ ସଙ୍ଗେ ବନ୍ଧେ ମହୀପତି ॥ ଖଣ୍ଡାଧର ଭେଣ୍ଡା ପରି ଶକୁନି ସେକାଳେ । ବେହରଣ କରୁଥିଲେ ସୈନ୍ୟଙ୍କର ମେଳେ ॥ ଦଣ୍ଡକରେ ଦଣ୍ଡବଳ ଦେଖି ଦୁର୍ଯ୍ୟୋଧନ । ଶ୍ରୀରାମଙ୍କ ଶ୍ରୀଛାମୁରେ କଲା ଦରଶନ ॥ ଆଲିଙ୍ଗନ କରି ରାମ ପାଶେ ବସାଇଲେ । ଇନ୍ଦ୍ରର ମନ୍ତ୍ର ବିଚାର ବୁଝାଇ କହିଲେ ॥ ବେଳେ ବେଳେ ମୋ ସଙ୍ଗେ ଲଗଇ ଶଚୀନାଥ । ଆଜ ଇନ୍ଦ୍ରକୁ ସବଂଶେ କରିବି ନିପାତ ॥ ନୂଆ ଇନ୍ଦ୍ର କରି ସ୍ୱର୍ଗପୁରେ ବସାଇବି । ଯାବତ କାଳକୁ ଏହୁ କଥା ରଖିଥିବି ॥ ଏପରି ହୋଏ ଯହୁଁ କହିଲେ ହଳପାଣି । ରାଗେ ମେ ମାନଗୋବିନ୍ଦ ବୋଇଲେ ଶିର ଟୁଣି ॥ ସ୍ୱର୍ଗେ ରାଜା ହୋଇ ଇନ୍ଦ୍ର ଭାବ ନ ପାଇଲା । ଜାଣୁ ଜାଣୁ କାଳ ସର୍ପ ମୁଖେ ହାତ ଦେଲା ॥ ନାବ ବିନେ ତରିବାକୁ ଅଗାଧ ଜଳଧି । ସାହାସ କଲା ଯା ଇନ୍ଦ୍ର ଏ ବଡ଼ ଅବିଧି ॥ ଏକାଳେ ପ୍ରବେଶିଣ ପାଣ୍ଡବ ପାଞ୍ଚଭାଇ । ନମସ୍କାର କଲେ ନାରାୟଣ ପାଦେ ଯାଇ ॥ ଗଉରବ କରି ହରି ପାଶେ ବସାଇଲେ । ଇନ୍ଦ୍ରର ମନ୍ତ୍ର ବିଚାର ବୁଝାଇ କହିଲେ ॥ ପୁଣି ସ୍ମରିଲେ ଶ୍ରୀକୃଷ୍ଣ ଗରୁଡ଼କୁ ମନେ । ବସିଥିଲା ପକ୍ଷୀରାଜ ରମ୍ୟକ ଆସ୍ଥାନେ ॥ ହରି ଚିନ୍ତାକଲେ ବୋଲି ଗରୁଡ଼ ଜାଣିଲେ । ତତକ୍ଷଣେ ଶ୍ରୀକୃଷ୍ଣ ଶ୍ରୀଛାମୁରେ ମିଳିଲେ ॥ ନମସ୍କାର କରିଣ ପୁଚ୍ଛନ୍ତି ବୈନତେୟ । କି ଅର୍ଥେ ମୋତେ ସ୍ମରଣ କଲ ଦେବରାୟ ॥ କହିଲେ ଗୋବିନ୍ଦ ଇନ୍ଦ୍ର ବାଦୀ ହେବା କଥା । ଶୁଣୁଥାନ୍ତି ଗରୁଡ଼ ଭୂଆଁଇ ଦେଇ ମଥା ॥ ମୂଖଟେକି କହନ୍ତି ରମ୍ୟକ ଅଧିପତି । ନିଷ୍ଟେ ବାସବ ଦେବତା କରିଲ ଅମାନ୍ତ ॥ ଆପଣଙ୍କ ଦାସ ତ ବାସବ ସ୍ୱର୍ଗରାଜା । ଦୋଷ କଲେ ନାଶ ନିଜ ହୋଇବ ଖଟୋଜା ॥ ଛାମୁ ହୋଇ ଦାସ ଦୋଷ ଧରିବା ଅବିଧି । ଶୁଣି ଗରୁଡ଼କୁ କହୁଛନ୍ତି ଦୟାନିଧି ॥ ଜାଣି ଜାଣି ଇନ୍ଦ୍ର ବାରମ୍ବାର ଅପରାଧ । କରିବାରୁ ବଢ଼େ ବଳଦେବଙ୍କର କ୍ରୋଧ ॥ ଏବାରକ ଇନ୍ଦ୍ର ଦୋଷ କ୍ଷମା ନ କରିବି । ନୂଆ ଇନ୍ଦ୍ର କରି ସ୍ୱର୍ଗପୁରେ ବସାଇବି ॥ କହି ତହିଁ—



Digitized by PPRACHIN, SOA

ପାଣି ଚକ୍ର ପରଶୁ ନନ୍ଦନ । ବୁଲନ୍ତି ଶଙ୍କଠାରେ ବନ୍ଦିଲେ ଅଭି-
ମାନ ॥ ଏଣୁ କାଳେ ସଜ ହେଲେ ଯାଦବ ପାଣ୍ଡବ । ଅନେକ ଶତ
ଭାଇ ସଙ୍ଗେ ସରବ କୌରବ ॥ ହଳର ଗଦାକୁ ବନ୍ଦେ କଲେ
ଉଗ୍ର ହୋଇ । ଧର ମାର ବୋଲି ଡାକ ନଗରେ ଶୁଭଇ ॥ ଏଥୁ
ଅନ୍ତେ ଶୁଣ ଆହେ ବଳଙ୍କ ରାଜନ । ସ୍ୱର୍ଗପୁରେ ଦୁନ୍ଦୁଭି ବାଜଇ
ଘନ ଘନ ॥ ବିଜୟ କଲେ ଶଙ୍କର ବୃଷଭ ଆରୋହୀ । ଆନନ୍ଦରେ
ଡବ ଡବ ଡମ୍ବରୁ ବାଜଇ ॥ ଦଶ ହସ୍ତ ତ୍ରିଲୋଚନ ଜାହ୍ନବୀ
ଶିଖର । ବାହାରିଲେ ତ୍ରିଶୂଳ ଧରିଣ କି ମନୋହର ॥ ସଙ୍ଗତରେ
ଅଛନ୍ତି କାର୍ତ୍ତିକ ଗଜାନନ । ନନ୍ଦୀ ଭୃଙ୍ଗୀ ସହିତେ ସବୁ ରୁଦ୍ର
ସୈନ୍ୟ । ବାରତା ପାଇ ପାତାଳ ତ୍ୟଜି ବାସୁକୀ । ଅଇଲେ ଇନ୍ଦ୍ର
ସହିତେ ଦେବଗଣ ଅଧିକ ॥ ମହିଷ ଆରୋହୀ ଯମ ବିଜେ କଲେ
ତହିଁ । କନ୍ଦର୍ପ ଅଛନ୍ତି ଦେଖି ପାଶେ ରହି ॥ କାଳ ବିକାଳ
ସହିତେ ଯେତେକ ଯମଗଣ । ସୁଧର୍ମା ସଭାରେ ପ୍ରବେଶିଲେ ସେହି-
କ୍ଷଣ ॥ ସତାଇଶ ନକ୍ଷତ୍ର ସହିତେ ଗ୍ରହମାନେ । ପରବେଶ ହେଲେ
ଯାଇ ଇନ୍ଦ୍ର ସନ୍ନିଧାନେ ॥ ଅଠାଶ କୋଟି ଗନ୍ଧର୍ବ କିନ୍ନରଙ୍କ
ସଙ୍ଗେ । ତେତିଶ କୋଟି ଦେବେ ଚଳନ୍ତି ରଙ୍ଗରଙ୍ଗେ ॥ ଐରାବତ
ପୃଷ୍ଠରେ ବିଜୟ ସୁରରାଜା । କି ମଧୁରେ ବାଜଇ ଦୁନ୍ଦୁଭି ଗୀତ
ବାଜା ॥ ଦେବଗଣ ରୁଦ୍ରଗଣ ଭୂତଗଣ ଭୂଲେ । ମହା ସମ୍ଭ୍ରମରେ
ଇନ୍ଦ୍ର ଯୁଦ୍ଧେ ବିଜେ କଲେ ॥ ଡବ ଡବ ଦମାମା ବାଜଇ ନିରନ୍-
ତର । କେ କାହା କଥା ବୋଲେ ବାଜନ୍ତି ରସାର ॥ ଭ୍ରୁଁ ଭ୍ରୁଁ ଭ୍ରୁଁ
ଭ୍ରୁଁ ଭ୍ରୁଁ ଭ୍ରୁଁ ଶଙ୍ଖ ବାଜେ ଉଚ୍ଚେ । ରଣ ଝମ୍ପ ଶବଦ କରନ୍ତି ଘଣ୍ଟ-
ଘଣ୍ଟି ଘଣ୍ଟେ ॥ ଲୋକ ମୁଖରବ ବାଦ୍ୟନାଦ ହୋଇ ମେଳ ।
ଧରମାର ବୋଲି ଶୁଭେ ନିରନ୍ତେ ଚହଳ ॥ ପାଦ ଘାତେ ଦଲ
ଦଲ ହେଲା ବସୁନ୍ଧରା । ସପତ ସାଗର ଜଳ ଲଙ୍ଘି ଆସେ ପରା ।
ଦେବ ମାନବ ସେକାଳେ ହୋଇ ମିଶାମିଶି । କ୍ଷୁଦ୍ରକେ ହସ୍ତେ
ହସ୍ତି ପାଦକୁ ପାଦେ ଚାପି ॥ ଡକା ମାରଇ ଗୋଇଠେ କେ

Digitized by PPRACHIN, SOA

ବଧାଏ ମାରଇ । କେ କାହାକୁ ଲେଉଟାଇ ଶୂନ୍ୟକୁ ଫିଙ୍ଗଇ ॥ କେ କରଇ ଗଦାଯୁଦ୍ଧ କେ ମାରେ ପଥର । କେ ବୃକ୍ଷ, ଉପାଡ଼ି ଯୁଦ୍ଧେ ହୁଏ ଅଗ୍ରସର ॥ ମାର ମାର ରଡ଼ ଘଡ଼ ଘଡ଼କେ ଶୁଭଇ । କହୁଛନ୍ତି ବେନି ସୈନ୍ୟ ବଥାନ ଲଢ଼ାଇ ॥ ସୁରସେନ ଶିବସେନ ଏ ବେନି ଗନ୍ଧର୍ବ । ରଥବାହି ଯାଆନ୍ତେ ଭେଟିଲେ ବଳଦେବ ॥ ଓଗାଳିଲେ ତାଳଧ୍ୱଜ ରଥକୁ ରୁହାଇ । ବନ୍ଧିଲେ ଗନ୍ଧର୍ବେ ଶର ରାମଙ୍କୁ ଉଦ୍ଦାଇ ॥ ଦୂରରୁ ମୁଷଳରେ କାଟନ୍ତି ବଳରାମ । ଦେଖି ଇନ୍ଦ୍ରପୁତ୍ର ଶିବସେନ କଲା ତମ ॥ ବାବଲ ବଜ୍ରମୁନା ପରିଘ ଶକ୍ତି ଶୂଳ । ଏକାବେଳେ ରାମଙ୍କୁ ବନ୍ଧିଲ ଇନ୍ଦ୍ରବାଳ ॥ ଖଣ୍ଡିଦୂରୁ ବଳଦେବ କଲେ ଖଣ୍ଡ ଖଣ୍ଡ । ରାଗେ ଇନ୍ଦ୍ରପୁତ୍ର ହସ୍ତେ ଧଇଲା କୋଦଣ୍ଡ ॥ ଅଗ୍ନିବାଣ ପବନାସ୍ତ୍ର ବନ୍ଧୁ ଶିବସେନ । କାଟିଲେ ତାହାକୁ ପୁଣି ରୋହିଣୀ ନନ୍ଦନ ॥ ପକ୍ରି ମୁଷଳରେ ଇନ୍ଦ୍ରବାଳକୁ କାଳକୁ । ଦେଖାଇଲେ ଦେଖାଇଣ ଆପଣା ବଳକୁ ॥ ଶିବସେନ ରଣେ ପଡ଼ିବାରୁ ସୁରସେନ । ବଳଦେବ ପରେ କଲେ ବାଣ ବରଷଣ ॥ କଳଙ୍ଗା ମାତ୍ରରେ ଯେସନ୍ତେ ବରଷଇ ନୀର । ସେହିପରି ବାଣ ବର୍ଷେ ସୁରସେନ ବୀର ॥ ଯେତେ ବାଣ ଟାଣରେ ମାରଇ ସୁରସେନ । ହାଣନ୍ତି ଦୂରରୁ ତାହା ରେବତୀ ରମଣ ॥ ଏହିପରି ଦୁଇ ଜଣ କଲେ ଘୋର ରଣ । ନଦୁଅନ୍ତି ବଳରାମ ପୁଣି ସୁରସେନ ॥ ବୀର ସୁରସେନ କ୍ରୋଧେ ପ୍ରଚଣ୍ଡ ହୋଇଲା । କୋଦଣ୍ଡରେ ସନ୍ଧି ତୀକ୍ଷ୍ଣ ମାର୍ଗଣ ବନ୍ଧିଲ ॥ ତାହା ଦେଖି ଖଣ୍ଡିଦୂରୁ ରେବତୀଙ୍କ ପତି । ଖଣ୍ଡ ଖଣ୍ଡ କଲେ ଫୁଲାଇ ଦେଇଣ ଛାତି ॥ ସୁରସେନ ଗନ୍ଧର୍ବ ବନ୍ଧିଲା ବଜ୍ର ଶର । ପୁଣି ତାହାକୁ କାଟିଲେ ଦେବ ହଳଧର ॥ ଅଧର କାମୋଡ଼ି ସୁରସେନ ପ୍ରତିଜ୍ଞା କରି । ବନ୍ଧିଲା ବାବଲି ବାଣ ରାମଙ୍କୁ ଓଟାରି ॥ ବକ୍ଷରେ ପଡ଼ିଲା ଯାଇ ବଳଦେବଙ୍କର । ଦେଖି ଆଖି ରକ୍ତ ପ୍ରାପ୍ତେ କଲେ ହଳଧର ॥ ଓପ୍ରୋଧ ନ ରଖି ମୁଷ୍ଟିକେ ସୁରସେନକୁ । ଏକାବାର ଭେଟାଇ ଦେଲେ ଯମରାଜନକୁ ॥

Digitized by PPRACHIN, SOA

ତୁହିଁଙ୍କର ଯୁଦ୍ଧ ଇନ୍ଦ୍ର ଦୂରେ ଦେଖୁଥିଲେ । ସୁରସେନ ମୃତ୍ୟୁ ଦେଖି ସ୍ୱାମଙ୍କୁ ଭେଟିଲେ ॥ ବାଟେ ରମ୍ଭା ପତ୍ର ପ୍ରାପ୍ତେ କମ୍ପି ବଜ୍ରଧର । ପ୍ରହାରିଲେ ବଜ୍ର ବଳଦେବଙ୍କ ଉପର ॥ ଗଦା ପ୍ରହାରେଣ ସ୍ୱାମ ବଜ୍ରକୁ କାଟିଲେ । ଦୂରୁ ମହାଦେବ ଦେଖି ଗୁରୁ କ୍ରୋଧ ହେଲେ ॥ ବଉଡ଼ାଇ ବୃଷଭକୁ ବଳଦେବ ପାଶେ । ପ୍ରବେଶି ସ୍ୱାମଙ୍କୁ ଗାଳି ଦେଲେ ଅତି ରୋଷେ ॥ ଅରେ ରେ ଗଉଡ ମୂର୍ଖ କେତେ ଭରସାରେ । ପର ନାରୀ ହର ଆଜ୍ଞା ସମରରେ ॥ ନ ଗଲରେ ଚୋର ବୁଦ୍ଧି ପୂର୍ବରୁ ତୁମ୍ଭର । ପିଲାଦିନୁ ଚୋରା ଖାଇ ନାମ ଧର ଚୋର ॥ କନକ ବେପାରୁ ରୁକ୍ମିଣୀକୁ ହରି ନେଲ । ପୁଅକୁ ମଧ ତାର ସେ ଗୁଣ ଶିଖାଇଲ ॥ ରତନ ଭୂଷଣ କରି ଅତି ଯତନରେ । ଗଧକୁ ମଣ୍ଡିଲେ ସେ କି ଅଶ୍ୱ ହୋଇପାରେ ॥ ଚନ୍ଦନରେ ମିଶ୍ରିତ କରିଲେ ରସୁଣକୁ । ସେ କି ଛାଡ଼ି ପାରିବ ତାହାର ଗୁଣକୁ ॥ ଶ୍ୱାନକୁ ସିଂହାସନରେ ଯେବେ ବସାଇବ । ସେ କି ପୁଣି ଛାଡ଼ିବ ତା ନିଜର ସ୍ୱଭାବ ॥ ଯେଉଁଠି କୁଳେ ଜାତ ହୋଇ ତୁମ୍ଭେ ସେହିପରି । ବଳମା ପତ୍ନୀ ହରଣ କର ପର ନାରୀ ॥ ଚୋର ହେଲ ବାର ପର ନୃପଙ୍କୁ ବାହାର । ପୁଣି ମାଉଁଙ୍କି ହରିଲ ସୋଦର ଦ୍ରୋହର ॥ ଶୁଣି ଶିର ଘୂର୍ଣ୍ଣିଣ କହନ୍ତି ହଳଧର । ଆରେ ହାଡ଼ ଗଡ଼ା କାହିଁ ହେଉଛ ଗର୍ବିତ ॥ ବାଘୁଆପରି ଶ୍ମଶାନରେ ଥାଅ ଦିନ ରାତି । ଯୋଗମାୟାଙ୍କୁ ହରିଲ ପାପୀ ମୂର୍ଖ ମତି ॥ ମାତୃ ହରଣ ଦୋଷରୁ ମୁକ୍ତ ହୋଇବାକୁ । ବହିଅଛ ଅଦ୍ୟାବଧି ମଥାରେ ଗଙ୍ଗାକୁ ॥ ଗୋହତ୍ୟା କରିଲ ଘୋର କୃଷ୍ଣ ଜନ୍ମାନ୍ତରେ । ବ୍ରହ୍ମହତ୍ୟା କଲ ପଞ୍ଚମୁଖ ମନଭାବେ ॥ ଆପଣେ ପାତକୀ କାହିଁ ପରେ ନିନ୍ଦା କର । ଶୁଣି ଅତି କ୍ରୋଧ କଲେ ଦେବ ମହେଶ୍ୱର ॥ ବଳଦେବଙ୍କ ଉପରେ ପ୍ରହାର ତ୍ରିଶୂଳ । ତଡ଼ାଦେଲେ ମଲ୍ଲ ମଲ୍ଲରେ ଅର୍ଦ୍ଧ ଚୋପାଳ ॥ ତାଳଧ୍ୱଜ ରଥେ ବଳଦେବ ବସିଥିଲେ । ହଳକୁ ଉଠାଇ ତ୍ରିଶୂଳ ହସ୍ତେ ଧରିଲେ ॥ ଧାଇଁ ପୁଣି ପିଟିଲେ ଶଙ୍କର

Digitized by PPRACHIN, SOA

ମସ୍ତକରେ । ଝଡ଼ାଇଣ ଶଙ୍କର ଧଇଲେ ତାହା କରେ ॥ ଉଠିଲେ ବୃଷ ଉପରେ ଦେବ ବଳଦେବ । ଧଇଲେ ରାମ ବେନି ଭୁଜକୁ ସଦାଶିବ ॥ ବଳରାମ ଚରଣରେ ଚରଣ ଛନ୍ଦିଲେ । ମୁଣ୍ଡେ ମୁଣ୍ଡ ଲାଗି ହୃଦେ ହୃଦ ଲଗାଇଲେ ॥ ଲାଗିଲା ମଲ୍ଲଯୁଦ୍ଧ ସେଠାରେ ଦୁଇ ଜନ । ନ ଯୁଝନ୍ତି ଦୁହେଁ ଏକୁ ଅନେକ ସମାନ ॥ ଗଡ଼ାଗଡ଼ି ପଡ଼ାପଡ଼ି ଉଡ଼ାଉଡ଼ି ହୋଇ । ଲଢ଼ାଲଢ଼ି ଲାଗିଛନ୍ତି ବେନି ବୀର ତହିଁ ॥ ଲେଉଟାଇ ବଳଦେବ ଶଙ୍କରଙ୍କୁ ଧରି । ବଜ୍ର ମୁଟିଏକ ମାଇଲେ ଢେର ପ୍ରଜ୍ଜ୍ୱାଳ କରି ॥ ପୁଣି ଲେଉଟାଇ ମାଡ଼ି ବସିଣ ଶଙ୍କର । ବୋଲନ୍ତି ଗରୁଡ଼ ମୋର ଲକ୍ଷ୍ମୀକୁ ସୁମର ॥ ଅନନ୍ତେ ବୃଷଭ ଡାକିଲା ହେ ରାମ ଶଙ୍କର । ସହି ନ ପାରିବି ଭାର ବାରେ ରକ୍ଷା କର ॥ ଶୁଣ ବୈବସ୍ୱତ ଇନ୍ଦ୍ର ଗୋବିନ୍ଦଙ୍କ ଯୁଦ୍ଧ । ପାଶେ ଛନ୍ତି ତାହାଙ୍କର ଯାଦବ ବିବୁଧ ॥ ସୁରପତି କହନ୍ତି ଶ୍ରୀକୃଷ୍ଣ ମୂଢଗର୍ବୀ । ତେର ଅର୍ଘ ଗୋପାଳ ଏତେ ବନ୍ଦନା କରାଇଁ ॥ ବତ୍ସା ଷଣ୍ଢା ମାରି କଲେ ଗୋହତ୍ୟା ପାପକୁ । ବନ୍ଧନ୍ତି ପୁଣି ଦୁର୍ମତି ହରିଲ ମାଇଁକୁ ॥ ଲବଣୀ ସର ଚୋରାଇ ଗୋପପୁରେ ଖାଇ । ସେତେ ଅପମାନ ପାଇ ଯେତେ ବାଡ଼ି ଖାଇ ॥ ଘେନି ରଜ୍ଜୁରେ ଯେ ପିଏ ବାନ୍ଧି ମାରୁଥାନ୍ତି । ତଥାପି ନଯାଏ ତୋର ସେହି ଚୌରବୃତ୍ତି ॥ ବଡ଼ହେଲୁ ଯେଣୁ ବଡ଼ ଚୋର ତୁ ହୋଇଲୁ । ଜନକ ଦେବାରୁ ରୁକ୍ମିଣୀକୁ ଚୋରାଇଲୁ ॥ କୁବ୍ଜା ପେଟେ ଶୂଦ୍ରା ଜଠରେ ହୋଇବ ଜନମ । ଶିଖାଇଲୁ ଚୋରା ଗୁଣ ତୋ ପୁଅଙ୍କୁ ଅଧମ ॥ ଶୁଣି ପ୍ରଦ୍ୟୁମ୍ନ କହନ୍ତି ଦ୍ୱାରକା ଈଶ୍ୱର । ଆପଣେ ପାତକୀ କିପାଁ ପରେ ନିନ୍ଦାକର ॥ ଗୁରୁପତ୍ନୀ ହରି ସସ୍ତ୍ର ଯୋନିକୁ ବଞ୍ଚିଲୁ । ମାତା ଗର୍ଭେ ପଶି ପବନକୁ ଖଣ୍ଡିକଲୁ ॥ ଋଷିପତ୍ନୀ ବୋଲି ନ ଭାବିଲୁ ଅହଲ୍ୟାଙ୍କୁ । ହରିଲୁ ପାଷାଣ୍ଡ ଧରି କପଟ ବେଶକୁ ॥ ଅନ୍ତର କାମୋଢ଼ ଇନ୍ଦ୍ର ବୋଲେ କେତେ ଗରୁଡ଼ । ମଣ୍ଡବନ୍ଧା ପରକା ମଣିଲୁ ମୋତେ ମୂଢ଼ ॥ ଶୁଣି ଶ୍ରୀହରି କହନ୍ତି ଗୋବର୍ଦ୍ଧନ ପୂଜା । କାଳେ ତୋ ବଳ ଜାଣିଛି

Digitized by PPRACHIN, SOA

ଆରେ ସୁରରାଜା ॥ ଦେବ ମାନବ ସଇନ୍ୟ ଯୁଦ୍ଧ ଯେ ପ୍ରଚଣ୍ଡ । ଦେଖୁଥିଲେ ନାରଦ ସାଜଣ ମାନଦଣ୍ଡ ॥ କଳି ଯୋକଡ଼ରୁ ଧୂଳି ମୁଠାଏ କାଢ଼ିଲେ । ଲଗୁ ଲଗୁ ହୋଇ ସୈନ୍ୟ ଉପରେ ଫିଙ୍ଗିଲେ ॥ ଲଗିଲା ଘୋର ଯୁଦ୍ଧ ଶୁଣ ହେ ବୈବସ୍ୱତ । ଭାରତ ଚରିତ ଛଣା ଅମୃତରୁ ଜାତ ॥ କାର୍ତ୍ତିକେୟ ସଙ୍ଗରେ ଯୁଝନ୍ତି କନ୍ଦର୍ପ । ଚନ୍ଦ୍ରଧ୍ୱଜ ସଙ୍ଗତେ ଯୁଝନ୍ତି ଗଣାଧିପ ॥ ବାସୁକୀ ସଙ୍ଗେ ଅର୍ଜୁନ ଯମ ସଙ୍ଗେ ଭୀମ । ନକୁଳ ଚନ୍ଦ୍ର ସଙ୍ଗତେ କରନ୍ତି ସଂଗ୍ରାମ ॥ ପବନ ସଙ୍ଗେ ଯୁଝଇ ସହଦେବ ବୀର । ସୂର୍ଯ୍ୟ ସଙ୍ଗେ ଦୁର୍ଯ୍ୟୋଧନ କରନ୍ତି ସମର । ନକ୍ଷତ୍ରଙ୍କ ସଙ୍ଗତେ କୌରବେ ଯୁଦ୍ଧ କଲେ । ଅକ୍ରୂର ଉଦ୍ଧବ ଦେବ ଥାଟକୁ ଦଳିଲେ । ହସ୍ତି ସଙ୍ଗେ ହସ୍ତି ଯୁଝେ ରଥି ସଙ୍ଗେ ରଥି । ଇନ୍ଦ୍ର ସଙ୍ଗତେ ଯୁଝନ୍ତି ଉଗ୍ରସେନ ନାତି ॥ କ୍ରୋଧେ ଇନ୍ଦ୍ର କହଇ ରେ ଗରୁଡ଼ ପାମର । ଆସ ଆସ ଯୁଦ୍ଧକୁ ରେ ହୁଅ ଅଗ୍ରସର । ଦରଜା ପଣ ପରାଏ ଶ୍ରୀକୃଷ୍ଣ କମ୍ପିଲେ । ଇନ୍ଦ୍ର ବକ୍ଷେ ନେଇ ବଜ୍ର ମୁଷ୍ଟିଏ ମାରିଲେ । କ୍ରୋଧେ ଇନ୍ଦ୍ର ଧନୁ ଧରି ଗୁଣକୁ ମାଜିଲା । ଭବଗ୍ରାହୀ ପରେ ବାଣ ବରଷଣ କଲା ॥ ଚକ୍ରରେ ଖଣ୍ଡ ଖଣ୍ଡ କରନ୍ତି ମଧୁହାରୀ । ଦେଖୁଥିଲେ ଗରୁଡ ସେ ସ୍ଥାନରେ ଉଭାରି । ଐରାବତ ଯୋରନ୍ତୁ କରନ୍ତେ ବିଦାରିଲା । ରକ୍ତରେ ଜରଜର ଗଜବର ହେଲା ॥ ଏକାଳେ ମୁକୁଟୋତ୍ତମ ନାଶ ହୋଇ ହସ୍ତୀ । ହସିବାରୁ ଲଜ୍ଜିତ ହୋଇଲା ଶଚୀନାଥ । ଐରାବତ ଦୁଃଖ ଦେଖି ସହି ନ ପାରିଲା । ଐରାବତକ ଶର ସନ୍ଧି କୃଷ୍ଣଙ୍କୁ ବିନ୍ଧିଲା । ଗରୁଡ଼କୁ ଦଶ ଶର ବିନ୍ଧିଲା ନିଠାଇ । ଦେଖି ଖଣ୍ଡ ଦୂରରୁ କାଟିଲେ ଭବଗ୍ରାହୀ ॥ ଶବ୍ଦଶର ବଜ୍ର ଯେଣୁ ଚକ୍ରରେ ହୋଇଲା । ବଜ୍ର ନେଇ କରି ଇନ୍ଦ୍ର କୃଷ୍ଣଙ୍କୁ ଚିହ୍ନିଲା ॥ ବୋଇଲରେ ମେଞ୍ଚଡ଼ ତୁ ଗୌଡ଼ ପୋକା ଖଣ୍ଡ । ଅନ୍ୟାୟ କରି ଆସିଛୁ ସଞ୍ଚାରଣ ଦଣ୍ଡ ॥ କଂସ କେଶୀ ସରିଏ କି ମୋତେ ତୁ ମଣିଲୁ । କେଉଁ ଗର୍ବବଳେ ମୋର ଶରକୁ ହାଣିଲୁ ॥ ସୁମର

Digitized by PPRACHIN, SOA

ତୋହର ଇଷ୍ଟ କେ ରଖିବରେ ତୋତେ । ନିଶ୍ଚେ ଆଜ ନେଇ ଦେବ ଜଗନ୍ନାଥ ହାତେ ॥ ଏତେ କହି ବ୍ରହ୍ମଶର ଗୁଣରେ ସନ୍ଧିଲା । ମନ୍ତ୍ର ପଢ଼ି ଶ୍ରୀକୃଷ୍ଣଙ୍କ ଉପରେ ଫିଙ୍ଗିଲା ॥ ଅଗ୍ନି ତେଜ ଜୁଳି ଚଳିଗଲା ଶରାସନ । ଦେଖି ଦୂରେ ଭାବନା କରନ୍ତି ଭଗବାନ ॥ ମନୁଷ୍ୟଙ୍କୁ ବ୍ରହ୍ମଶର ପ୍ରୟୋଗ ଅବଧି । ଜାଣୁ ଜାଣୁ ଇନ୍ଦ୍ର ଦେଖୁ ହରାଇଲା ବୁଦ୍ଧି ॥ ମନୁଷ୍ୟ ଶରୀର ବହି ବ୍ରହ୍ମ ଶରାସନ । ବ୍ୟର୍ଥ କଲେ ନିନ୍ଦା ନିଶ୍ଚେ ହୋଇବ ଭୁବନ । ଭାବଗ୍ରାହୀ ଭାବନାକୁ ଗରୁଡ଼ ଜାଣିଲେ । ବେଗେ ଯାଇ ବ୍ରହ୍ମଶର ନିକଟେ ମିଳିଲେ ॥ ସ୍ତୁତି କରନ୍ତି ଗରୁଡ଼ ବ୍ରହ୍ମଶର ଗ୍ରହିଁ । ଅନ୍ତର୍ଯାମୀ ପଣେ ତୋତେ ପେଷିଲୁ ମୁରାରି । ସ୍ୱୟଂ ପରଂବ୍ରହ୍ମ ବିଷ୍ଣୁ ନର କଳେବର । ହୋଇ ଦୁଷ୍ଟ ବିନାଶନେ ଯାର ଅବତାର ॥ ତୁମ୍ଭେ ଶରରାଜ ଶାନ୍ତ ହୁଅ ଏ କାଳରେ । ସ୍ତୁତି କରି ଧରିଲା ତା କର କମଳରେ ॥ ଶୁଣ ବୈବସ୍ୱତ ମନୁ କହନ୍ତି ଅଗସ୍ତି । ଘୋର ଯୁଦ୍ଧ ହେଲା ସାତ ଦିନ ସାତ ରାତ୍ରି ॥ ଇନ୍ଦ୍ରର ଶର ବ୍ୟର୍ଥ ହେବାରୁ ମୁଖ ପୋଡ଼ି । ମନେ ମନେ ଭାବନା କରଇ ଶଚୀପତି ॥ କେତେକ ପରାକ୍ରମ କଲା ପକ୍ଷୀ ଗୋଷ୍ଠୀ ଶୂର । ବୋଲଣି ପ୍ରଭୁ ପକ୍ଷରେ ଲାଗି ହେଲା ଶର ॥ ଖାଣ୍ଡ ହୋଇ ଉଡ଼ିଣ ସେ ପକ୍ଷୀରାଜ ଗଲା । ଇନ୍ଦ୍ରର କଣ୍ଠରେ ବାଜି ଲୁହ ବାହାରିଲା ॥ ରୁଧିରେ ଜର ଜର ହୋଇଲା ମଘବାନ । ଦୂରରୁ ଗଦା ଫିଙ୍ଗିଲେ ଯୋଦ୍ଧା ସଙ୍କର୍ଷଣ । ବଳଦେବ ଗଦାଘାତେ ଘୁମାଇଲା ଶକ୍ର । ଗ୍ରହିଲେ ଚକ୍ରଧର ନେବାକୁ କର ବନ୍ଧ ॥ ଆସୁଥିଲେ ବରୁଣ ଶୁଭଙ୍କୁ ଧଜ ହୋଇ । ଗଦାଏ ଫିଙ୍ଗିଲେ ଯମ ବୁଲଇ ବୁଲଇ । ଖଣ୍ଡେ ଦୂରେ ଦେଖୁଥିଲେ ଦେବ କୃତ୍ତିବାସ । ଦଉଡ଼ାଇ ବୃଷଭ ମିଳିଲେ ଯମ ପାଶ ॥ ଇନ୍ଦ୍ର ଯୁଦ୍ଧ ପଡ଼ିବାରୁ ସୈନ୍ୟ ମଧ୍ୟେ ହୁରି । ହୋଇବାରୁ ଆସିଲେ ଗାଣ୍ଡିବ ଧନୁର୍ଦ୍ଧାରୀ । ଅର୍ଜ୍ଜୁନଙ୍କୁ ଦେଖି ଯୁଦ୍ଧ ଉପେକ୍ଷି ଶଙ୍କର । ଉଭା ହେଲେ ତଳିଦେଲେ ପକାଇ ଧନୁଶର । ସଦାଶିବ ସଙ୍ଗରେ ଥିବାର

Digitized by PPRACHIN, SOA

ସୈନ୍ୟଗଣ । ଭୟଭୀତ ହୋଇ ସର୍ବେ କଲେ ପଳାୟନ ॥
ଯକ୍ଷଗଣ ଦେବଗଣ ଯେତେ ରହିଥିଲେ । ଭୟପାଇ ସକଳେ
ସମର ଛାଡ଼ିଗଲେ ॥ ପଳାଇଲେ ଈଶ୍ୱର ନନ୍ଦୀରେ ବୃଷ ଚଢ଼ି ।
ଧାଇଁଲେ ଶିଘ୍ରପଣ ହୋଇଣ ତତକ୍ଷଣ ॥ ନାରଦ କହିବା କଥା
ମନେ ରଖିଥିଲେ । ଡାକିଲ ମହେଶ୍ୱରଙ୍କୁ ଶ୍ରୀକୃଷ୍ଣ କହିଲେ ॥
ହଡ଼ାଗଡ଼ା ବୁଢ଼ା ତୁରେ ଯାଉଅଛୁ କାହିଁ । ଇନ୍ଦ୍ର ମଲଣି ତା
ସଙ୍ଗେ ଯିବୁ ପର ଲୁହି ॥ ବ୍ରହ୍ମହତ୍ୟା ଠଟା ହତ୍ୟା କରିଣ ମହା-
ପାପ । ଅର୍ଜିଅଛୁ ନକରୁ ତୀର୍ଥରେ ଜପା ଜପ ॥ ବସିଛ ବୈଷ୍ଣବ
ବେଶ ରୁଦ୍ରାକ୍ଷ ପକାଇ । ବାପୁର 'ନ କହଣ ଯୁଦ୍ଧକୁ ଛାଡ଼ି ହୋଇଁ ॥
ମାତୃ ହରଣ ଦୋଷକୁ କରନ୍ତୁ ନିଲଜ୍ଜ । ଲଜ୍ଜା ନାହିଁ ମୁଦାକୁ
ଯୁଦ୍ଧକୁ ହେଉ ଯଜ ॥ ଶୁଣି ରାଗେ ପ୍ରଚଣ୍ଡ ହୋଇଣ ସଦାଶିବ ।
ବୋଇଲେ ରେ ଗଉଡ଼ ଟୋକା ବଡ଼ମା ନ ଯିବ ॥ ଜାଣିନ୍ଦୁ କି ଏହି
ଯୁଦ୍ଧ ଯେସନ୍ତ ଶୋଣିତପୁର । ଘରେ ଘରେ ପଶି ବେଶ୍ୟାଳଇବୁ ଲଜ ସର ॥
ମାଉଁଣି ହରିଲୁ ପୁଣି ଚଣ୍ଡୀକୁ ମାରିଲୁ । ଦାଣ୍ଡକୁ ପଳାଇ କହୁ
ଲଜ୍ଜା ନ ପାଇଲୁ ॥ ବ୍ରହ୍ମହତ୍ୟା କଲୁ ତୁ ରେ ମାର ଶ୍ରବଣାକୁ ।
ନଜର ଦୋଷ ନ କହି ନନ୍ଦନ୍ତୁ ଘରକୁ ॥ ଶୁଣି ଶିଙ୍ଘ ହସୁଣିଣ
କହନ୍ତି ନାରାୟଣ । ମୁଁ ଯେବେ ମାର ନ ଥାନ୍ତି ଲଙ୍କାର ରାବଣ ॥
ଆଜଯାଏ ତାହାର କିଙ୍କର ହୋଇଥାନ୍ତୁ । ଟକଟେକବେଳେ ସର୍ପ
ଚଢ଼ି ଯୁଦ୍ଧକୁ ଆସନ୍ତୁ ॥ ଏହିପରି ପରସ୍ପର ହୋଇ କହାକହି ।
ଆରମ୍ଭିଲେ ଘୋର ଯୁଦ୍ଧ ହରି ହର ଦୁଇ । ଧନୁଃଶର ମଲ୍ଲମର
ମୁଷ୍ଟି ଚଉତାଳ । ପାଦେ ପାଦ ଛନ୍ଦାଛନ୍ଦି ମଲ୍ଲ କୁତୂହଳ ॥
ମୁଣ୍ଡେ ମୁଣ୍ଡ ପିଟନ୍ତି ବୁକୁରେ ବୁକୁଲଦା । ପାଦଘାତେ
ଚତୁର୍ଦ୍ଦିଗ ଭୂମି ହେଲା ପଦା ॥ ମଲ୍ଲ ଯୁଦ୍ଧ ଶେଷେ ଗଦା
ଯୁଦ୍ଧକୁ ହୋଇଲ । ତହିଁପରେ ଖଡ୍ଗ ଯୁଦ୍ଧକଲେ ମହାବଳୀ ॥
ପ୍ରଚଣ୍ଡ ହୋଇଣ ବୃନ୍ଦାବନ ନାଟେଶ ହାତ । ଦେଖି ଡାକିଲେ
ଗଉଡ଼ ଲହରେ ନସନ୍ତ ॥ ଶୁଣି ହସିଣ କହନ୍ତି ଦେବ

Digitized by PPRACHIN, SOA

ଯାଉଥିଆ । ନିଶ୍ଚେ ଦେଉଥିବୁ ଇନ୍ଦ୍ରକୁ ଥାଅରେ ଉଚିଆ ॥ ପ୍ରେରିତପତ୍ର ସଦନେ ବାସବ ସ୍ଵାଗତରେ । କରିବୁ ସୁଧର୍ମାସଭା ଅଳ୍ପ ସମୟରେ ॥ ସହୁ ନପାରି ଶଙ୍କର କୋଦଣ୍ଡ ଧଇଲେ ॥ ଦଣ୍ଡକରେ ପୃଥିବୀରେ କାଣ୍ଡ ପୂର୍ଣ୍ଣ କଲେ । ମାର୍ତ୍ତଣ୍ଡ ମଣ୍ଡଳକୁ ଛାଡ଼ିଲା ଯାଇ ବାଣ । ପୁଣ୍ଡରୀକାକ୍ଷ ଦେଖିଲେ ଛୋଟିଲା ମାର୍ଗଣ ॥ ଗରୁଡ଼ରେ ବଜେ ହରି ଧରି ସୁଦର୍ଶନ । ପକ୍ଷୀ ବିସ୍ତାରି ଗରୁଡ଼ ଉଡ଼ଇ ବହନ ॥ ଚକ୍ରରେ ଖଣ୍ଡ ଖଣ୍ଡ କରନ୍ତି ବାଣଗଣ । ଏଥୁଅନ୍ତେ ଶୁକଦେବ ବୋଲନ୍ତି ନରପତି ॥ ଦ୍ଵିତୀୟରୁଦ୍ର ଶଙ୍କରଙ୍କ ଏ ଦ୍ଵିତୀୟ ଭେଟ । କର୍ଣ୍ଣେ ଶୁଣିଲେ ଦର୍ଶନ ନୋହିବ ତରାଟ ॥ ହରିହର ଯୁଦ୍ଧକଥା ଅଷ୍ଟମୁଖୁଁ ଶୁଣି । ପ୍ରବେଶିଲେ ସେଠାରେ ପାଣ୍ଡବ ଚୂଡ଼ାମଣି ॥ ଅର୍ଜ୍ଜୁନଙ୍କୁ ଦେଖି ହରି ସମର ତେଜିଲେ । ଶିବ ଗର୍ବ ଖର୍ବ ହେବ ଶ୍ରୀକୃଷ୍ଣ ଭାବିଲେ ॥ ଗନ୍ଧର୍ବ କଥା ସବୁ ଈଶ୍ଵର ଚିହ୍ନେଇ । ରହିଲେ ନତ ମସ୍ତକେ ପୃଥ୍ଵୀକି ଅନାଇ ॥ ଏକାଳେ ଧନଞ୍ଜୟ ବିମାନୁ ଓହ୍ଲାଇଲେ । ସୁଧୀର ଗତିରେ ହରି କତିରେ ମିଳିଲେ ॥ ଶିବପାଦେ ନମସ୍କାର କଲେ ଅରଜୁନ । କଲ୍ୟାଣ ବାଞ୍ଛନ୍ତି ତାଙ୍କୁ ପାର୍ବତୀରମଣ ॥ ଅରଜୁନ ପୁଚ୍ଛନ୍ତି ହେ ଜାହ୍ନବୀ ଭୂଷଣ । ଶୋଭାବତୀ ଶାମ୍ବଙ୍କୁ ତ କରିଲା ବରଣ ॥ କି କାରଣେ ହେଲା ଇନ୍ଦ୍ର ଗୋବିନ୍ଦଙ୍କ ଯୁଦ୍ଧ । ତୁମ୍ଭେ ଥାଇ ଇନ୍ଦ୍ରକୁ ନ କଲ କିପାଁ ବୋଧ ॥ ମତ୍ତଗର୍ବେ ଇନ୍ଦ୍ର କିପାଁ ଯୁଦ୍ଧ ଉଆଇଲେ । ଆପଣ ନ ଯିବ କିପାଁ ଯୁଦ୍ଧକୁ ଅଇଲେ । ଶୁଣି ଈଶ୍ଵର କହନ୍ତି ଶୁଣ ହେ ଅର୍ଜ୍ଜୁନ । ବାସବ ଦେବଗଣଙ୍କ ମଧ୍ୟରେ ରାଜନ ॥ ତାର ଉତ୍ପ୍ରୋଧେ ଯୁଦ୍ଧରେ ପ୍ରବେଶ ହୋଇଲି । ତୋତେ ଦେଖି ରଣ ଛାଡ଼ି ଓହରି ରହିଲି ॥ ଏପରି କଥାବାର୍ତ୍ତା ହୁଅନ୍ତେ ହରି ପାର୍ଥ । ଏକାଳେ ବିଜୟ କଲେ ତହିଁ ରତିନାଥ ॥ ମରାଳ ପୃଷ୍ଠରେ ବଜେ କମଣ୍ଡଳ ଧରି । ଦେଖି ହରି ଅରଜୁନ କଲେ ନମସ୍କାର ॥ ବଳଦେବ ଜୁହାରିଲେ ବ୍ରହ୍ମାଙ୍କ ପୟରେ । ସର୍ବ ସୈନ୍ୟେ ମାନ୍ୟ ଧର୍ମ ହୁଅନ୍ତି ସେଠାରେ ॥ ବ୍ରହ୍ମାଏ ବୋଲନ୍ତି

Digitized by PPRACHIN, SOA

ଆପଣାର ମଧ୍ୟେ ରଣ । କରିବାର ଉଚିତ କି ରେବତୀ ରମଣ ॥
ବଳଦେବ କହନ୍ତି ଆମ୍ଭର କେଉଁ ଦୋଷ । ଅବଶ୍ୟ କଲୁ ପିତା
ସ୍ୱର୍ଗର ନରେଶ ॥ ବିଧାତା ବୋଇଲେ ଏକ ସ୍ଥାନେ ସର୍ବେ ବସି ।
ନ୍ୟାୟାନ୍ୟାୟ ବୁଝିବା ଚାଲହେ କାଶୀବାସୀ ॥ ଶିବ ବ୍ରହ୍ମା ଅର୍ଜ୍ଜୁନ
ବଳଦେବ ସହିତ । ନନ୍ଦନ ବନରେ ଯାଇ ହେଲେ ଉପସ୍ଥିତ ।
ଏକାଳେ ନନ୍ଦୀ ଭୃଙ୍ଗୀ ଚାହିଁ ପରମେଷ୍ଠି । ବୋଇଲେ ରେ
ଦେଖି ଆସ ଶ୍ରୀକୃଷ୍ଣ ଯୁଧିଷ୍ଠି ॥ ବିଧାତା ଆଜ୍ଞାରେ ନନ୍ଦୀ ଭୃଙ୍ଗୀ
ଚଳିଲେ । କୃଷ୍ଣ ଯୁଧିଷ୍ଠିରଙ୍କୁ ବ୍ରହ୍ମା ଆଜ୍ଞା ଜଣାଇଲେ ॥ ଯୁଧିଷ୍ଠିରଙ୍କୁ
ଘେନି କୃଷ୍ଣ ନନ୍ଦନ ବନରେ । ପରବେଶି ନମିଲେ ବ୍ରହ୍ମାଙ୍କ
ଶ୍ରୀପଦ୍ମରେ ॥ କରଯୋଡ଼ି କଲ୍ୟାଣ ବାଞ୍ଛିଲେ ବେଦବର । ଅକାଣ୍ଡକ
ଶଙ୍କା କୃଷ୍ଣ ହର ଯୁଧିଷ୍ଠିର ॥ ବିଧାତା ପୁଚ୍ଛିଲେ ମଧୁସୂଦନଙ୍କୁ
ଚାହିଁ । ଇନ୍ଦ୍ର ସଙ୍ଗେ ଦ୍ୱନ୍ଦ୍ୱ କିପାଁ କଲହେ କହ୍ନାଇ ॥ ଆମ୍ଭେ ତା
ଜାଣୁ ନା ଜାଣୁ ଗୋବିନ୍ଦ ବୋଇଲେ । ଏଥିକାଳ ମାଣସ୍ତ ଶିବ ଇନ୍ଦ୍ରଙ୍କୁ
ବୁଝିଲେ ॥ ବ୍ରହ୍ମା ପୁଚ୍ଛାକଲେ ଇନ୍ଦ୍ର ଜନ୍ମ କେଉଁଠାରେ ।
ଅର୍ଜ୍ଜୁନ କହିଲେ ପଡ଼ିଛନ୍ତି ସମରରେ ॥ ବ୍ରହ୍ମା ଶିବ ଯୁଧିଷ୍ଠି
ଅର୍ଜ୍ଜୁନ କୃଷ୍ଣ ଚାଲେ । ସମର ସ୍ଥାନରେ ଯାଇ ପରବେଶ ହେଲେ ॥
କମଣ୍ଡଳୁ ଜଳ ସିଞ୍ଚି ଉଠାଇଲେ ଇନ୍ଦ୍ରଙ୍କୁ । ଆଜ୍ଞାଦେଲେ ବ୍ରହ୍ମା ନନ୍ଦନ-
ବନେ ଯିବାକୁ ॥ ଇନ୍ଦ୍ରାଦି ଦେବଗଣ ପାଣ୍ଡବ ଯଦୁ ସୈନ୍ୟ ।
ସକଳେ ପ୍ରବେଶ ହେଲେ ନନ୍ଦନ କାନନ ॥ ଦ୍ୱନ୍ଦ୍ୱ ବନ୍ଦ ହେବା
ଜାଣି ନାରଦ ମହର୍ଷି । ବୀଣା ବଜାଇ ମିଳିଲେ ସେହି ସ୍ଥଳରେ
ଆସି ॥ ପିତାମହଙ୍କୁ ନାରଦ ନମସ୍କାର କଲେ । ନିଜ ନନ୍ଦନଙ୍କୁ
ବ୍ରହ୍ମା କଲ୍ୟାଣ ବାଞ୍ଛିଲେ ॥ ପରମେଷ୍ଠି ପୁଚ୍ଛନ୍ତି କହ ହେ ପୁରନ୍ଦର ।
କିପାଁ ତୁମ୍ଭ ମଧ୍ୟେ ହେଲା ବିଷମ ସମର ॥ କହନ୍ତି ବାସବ ଦେବ
ଶୁଣ ଏକ ମନେ । ବଡ଼ ଦୁଷ୍ଟ ଅଟନ୍ତି କୃଷ୍ଣଙ୍କ ପୁଅମାନେ ॥
ମଞ୍ଜପୁର ସୁନ୍ଦରୀ ନାରୀଙ୍କୁ ବଳକାରେ । ହରିଲେ ପଶିଲେ
ଏବେ ମୋର ସ୍ୱର୍ଗପୁରେ ॥ ସୁରସେନ ଗନ୍ଧର୍ବ ନନ୍ଦନୀ

Digitized by PPRACHIN, SOA

ଶୋଭାବତୀ । ନନ୍ଦନ ବନେ ତାହାକୁ କୃଷ୍ଣଙ୍କ ସନ୍ତତି ॥
ହରିବାରୁ ତୋଟା ରଖିଆଳ କଲେ ରଡ଼ି । ଅବଜ୍ଞରେଁ ମାଇଲି
ନ ଦେଖାଇ ବୀରପଣ ॥ ବାରତା ପାଇଣ ତାଙ୍କୁ ବନ୍ଧାଇ ମୁଁ ନେଲି ।
ସ୍ୱର୍ଗପୁରେ ବନ୍ଦୀ ଘରେ ନେଇଣ ରଖିଲି ॥ ଲଗାଇ ନାରଦ ଏହି
ଦ୍ୱନ୍ଦ ଭିଆଇଲେ । ନବୁଝି କୃଷ୍ଣ ମୋ ସଙ୍ଗେ ଦ୍ୱନ୍ଦକୁ ଅଇଲେ ॥
ନାରାୟଣ କହନ୍ତି କହ ହେ କୁଶଧ୍ୱର । ଏ କଥାକୁ ଦୋଷ ନିକ
ହୋଇବ ଆମ୍ଭର ॥ ଯୁଧିଷ୍ଠିର କହୁଛନ୍ତି ବ୍ରହ୍ମାମୁଖ ଚୁହିଁ । ମୋ
କଥାକୁ ଅବଧାନ କରନ୍ତୁ ଗୋସାଇଁ ॥ ଶାମ୍ବ ଶୋଭାବତୀଙ୍କୁ
ଏଠାକୁ ଦେନିଆସ । ତାହାଙ୍କୁ ପୁଚ୍ଛି ବୁଝିବା ଏହାର ସନ୍ଦେଶ ॥
ବ୍ରହ୍ମାଏ କହିଲେ ଏହା ଅଟଇ ଯଥାର୍ଥ । ଈଶ୍ୱର କହନ୍ତି ତୁମ୍ଭେ
ଶୁଣ ଶଚୀନାଥ ॥ ତୁମର କୁମାରୀକୁ ଏଠାକୁ ଆସ ଦେନି । ବୋଲି
ପରି ଆଜ୍ଞା ଦେଲେ ଦେବ ପଦ୍ମଯୋନି ॥ ଚିତ୍ରସେନକୁ କହିଲେ
ସୁରପୁର ସାଇଁ । କୁମାର କୁମାରୀଙ୍କୁ ବହନ ଆଣଯାଇ ॥ ଆଜ୍ଞାପାଇ
ଚିତ୍ରସେନ ଶୀଘ୍ର ଚଳିଲି । ଅମରାବତୀ ନଗରେ ପ୍ରବେଶ
ହୋଇଲି ॥ ଶାମ୍ବ ଶୋଭାବତୀଙ୍କୁ ବସାଇ ବିମାନରେ । ପ୍ରବେଶ
ହେଲି ଆସି ନନ୍ଦନ ବନରେ ॥ ବ୍ରହ୍ମାଙ୍କୁ ଦେଖିଣ ଶାମ୍ବ ନମସ୍କାର
କଲେ । ଚିରଞ୍ଜୀବୀ ହୁଅ ବୋଲି ବିଧାତା ବୋଇଲେ ॥ କୃଷ୍ଣ
ଅର୍ଜୁନ ଯୁଧିଷ୍ଠି ବଳଦେବ ପାଦେ । ନମସ୍କାର କଲେ ଶାମ୍ବ
ମନର ଆନନ୍ଦେ ॥ ବେଦବର ପୁଚ୍ଛନ୍ତି କହ ହେ କୃଷ୍ଣସୁତ ।
କାହିଁପାଇଁ ଆରମ୍ଭିଲ ଏ ଘୋର ଅନର୍ଥ । କରଯୋଡ଼ି ଶାମ୍ବବୀର
କହଇ ବ୍ରହ୍ମାଙ୍କୁ । କନକ ଚମ୍ପାର୍ଥେ ଗଲି ନନ୍ଦନ ବନକୁ ॥
କୁମାରୀ କହଇ ଶୁଣିମା ତୁମ୍ଭ ବେଦବର । ନାହିଁ ଲେଶମାତ୍ର ଦୋଷ
କୃଷ୍ଣ ପୁତ୍ରଙ୍କର । ସଖୀ ସମ୍ଭେ ସେ ଦିନେ ନନ୍ଦନ ବନକୁ ।
ଯାଇଥିଲି ମୁହିଁ ଶୁଦ୍ଧ ସ୍ନାନ କରିବାକୁ । କନ୍ଦର୍ପ ଦର୍ପଭଞ୍ଜା ରୂପକୁ
ନୈନେ ମୋର । ଦେଖିବାରୁ ମରମେ ବାଜିଲା ଫୁଲଶର ॥ ସ୍ୱଭାବେତ
ଜନ୍ମାନା ଅବଳା ସ୍ୱାମୀ ବିନା । ପାଇଲି କ୍ଲେଶ କାଳରେ ମୁଁ ବହୁତ

Digitized by PPRACHIN, SOA

ବେଦନା ॥ ବିଶେଷେ ବସନ୍ତ କାଳ ଜଳକଣ୍ଠ ଡାକ । ପଞ୍ଚବାଣୁ
ହଜିଗଲା ମୋହର ବିବେକ ॥ ଅବିବାହୀ ହୋଇ ତ ସହଜେ
ଥିଲି ରହି । ଭାବିଲି କେହି ଜଣେ ହେବତ ମୋର ସାଇଁ ॥ ନିଶ୍ଚେ
ଏ ଘୋର ପୁରୁଷ ବଡ଼ କୁଟିଳ ଜାତ । ହୋଇଥିବେ ଧରିବ ମୁଁ
ଏହାଙ୍କର ହାତ ॥ ଏତେ ଭାଳି ବର୍ଣ୍ଣମାଳ ଦେଲି ଶାମ୍ବ ବକ୍ଷେ ।
ନାହିଁ ପୁରୁଷଙ୍କ ଦୋଷ ଜାଣିଲି ପ୍ରତ୍ୟକ୍ଷେ ॥ ବର୍ଣ୍ଣମାଳା ଦେବାରୁ
ରଥରେ ଶାମ୍ବ ବୀର । ବସାଇ ମୋ ନେଇଥିଲେ ଦ୍ୱାରକା ନଗର ॥
ସୈନ୍ୟଗଣେ ନୁହିଁ ନିଜ ମତ୍ତ ଘଟିବ ମଲେ । ଶୁଣି ଯୁଧିଷ୍ଠିରଙ୍କୁ
ବେଦବର ପୃଚ୍ଛା କଲେ ॥ ଏଥିରେ ନ୍ୟାୟ ଅନ୍ୟାୟ କର ବିବରଣ ।
ପକ୍ଷାପାତ କଥାତ ନ କହିବ ଆପଣ ॥ ଶୁଣି ଯୁଧିଷ୍ଠିର କହିଲେ
ବ୍ରହ୍ମାମୁଖ ଚାହିଁ । କହିଲତ କନ୍ୟା ସତ୍ୟ ନ କହିବ ମୁହିଁ ॥ ଏହା
ଶୁଣି ସୁନାଶୀର ଶିର ନୁଆଇଲେ । ଏଥୁଅନ୍ତେ ଶୁଣ ରାଜା ଅଗସ୍ତି
କହିଲେ ॥ ବଳଦେବ କେଶବ ଉଦ୍ଧବ ଉଗ୍ରସେନ । ପାଣ୍ଡବ
କୌରବ ଆଦି ଯେତେକ ଯଦୁ ସୈନ୍ୟ ॥ ଏମାନଙ୍କ ମୁଖ ପ୍ରଭା
ପ୍ରଭାତ ସାରସ । ବିକଶିଲା ପରି ସେ କାଳକୁ ହେଲା ଦୃଶ୍ୟ ॥
ଈଶ୍ୱର ଚିତ୍ରସେନ ଗନ୍ଧର୍ବ ସକଳଙ୍କ । ମୁଖ ଚନ୍ଦ୍ରମାରେ ଲାଗିଗଲା
ଜ୍ୱା କଳଙ୍କ ॥ ଏକାବେଳେ କହିଲେ ଇନ୍ଦ୍ର ମୁଖ ଚାହିଁ ବିଧି । ଯୁବା କନ୍ୟା
ରଖିବାର ଇନ୍ଦ୍ରର ଅବଧି ॥ ଯୁବତୀ କନ୍ୟାକୁ ଯେଉଁ ପିତା
ରଖିଥାଇ । ତା ନିମନ୍ତେ ନିଶ୍ଚେ ତାର ସ୍ୱର୍ଗେ ଆଶା ନାହିଁ ॥ ପୁଣି
ସେ ଶୋଣିତ ପାନ୍ତି ପିତୃ ଲୋକେ ଛାର । ମନୁ ସଂହିତାରେ
ଏହା ହୋଇଛନ୍ତି ପ୍ରଚୁର ॥ ଯାହା ହେବାର ହେଲାଣି ଆହେ
ମଘବାନ । କୃଷ୍ଣ ନନ୍ଦନକୁ କର ଏ କନ୍ୟା ପ୍ରଦାନ ॥ ବୃହସ୍ପତିଙ୍କୁ
ଡକାଇ ଯୋଗ ଥିଯୁଜର । ଦେନ ମୋ ବଚନ ଆନ କିଛି ନ
ବିଚାର ॥ ଚିତ୍ରସେନ ସୁରସେନ ମୁଖ ଚାହିଁ ସ୍ରଷ୍ଟା । କହନ୍ତୁ ତୁମ୍ଭର
ନନ୍ଦନୀ ତ ହେଲା ଭ୍ରଷ୍ଟା ॥ ଅନ୍ୟ କେହି ବିବାହକୁ ବାଞ୍ଛିବେ
ଏହାକୁ । କର୍ମ ବଶେ ଯାନବନ୍ଦୁ ମିଳୁଛି ତୁମ୍ଭଙ୍କୁ ॥ କେଉଁ ପୁଣ୍ୟେ

Digitized by PPRACHIN, SOA

ସୁରସେନ କେଉଁ ତପକଲା । ଭାଗ୍ୟବଳେ କୃଷ୍ଣରେ ସମନ୍ଧୀ ପାଇଲା ॥ ବ୍ରହ୍ମାଙ୍କ ବଚନେ ସର୍ବେ ହୋଇଲେ ସନ୍ତୋଷ । ଡ଼କାଇଲେ ଗୁରୁଙ୍କୁ ଅମରପୁର ଈଶ ॥ ବୃହସ୍ପତି ବେଗେ ଗଲେ ନନ୍ଦନ ବନକୁ । ବ୍ରହ୍ମା ପୃଚ୍ଛାକଲେ ଶୁଭଲଗ୍ନ କହିବାକୁ ॥ ପାଞ୍ଜି ଧରି କହନ୍ତି ସେଠାରେ ବୃହସ୍ପତି । ବୈଶାଖ ଶୁକ୍ଳ ତୃତୀୟା ଶନିବାର ସତି । ତିନି ଦଣ୍ଡ ଠାରେ 'ଅନୁରାଧା ନକ୍ଷତ୍ରେ । ବିବାହ ପାଣିଗ୍ରହଣ ହେବ ସନ୍ଧିଏତରେ ॥ ଆଜକୁ ତିନି ଦିବସ ଅଛି ଏହି ଯୋଗ । ବିଳମ୍ବ ନକର ଶୀଘ୍ର କର ଉଦ୍ୟୋଗ ॥ ବୃହସ୍ପତି ଠାରୁ ଶୁଣି ଶଚିସେନ ଧାଇ । ମଣ୍ଡିବାକୁ ସ୍ୱର୍ଗକୁ ପେଷିଲେ ସୁରସାଇଁ ॥ ଆଜ୍ଞା ପରମାଣେ ହରିଚନ୍ଦନ ଗାଢ଼ି ଗଲା । ଅମରାବତୀ ପୁରେ ଘୋଷଣା ଦିଆଇଲା ॥ ସ୍ୱର୍ଗପୁରବାସୀ ସୁର ଗନ୍ଧର୍ବ କିନ୍ନର । ଯକ୍ଷ ରକ୍ଷ ସହିତେ ସକଳ ବିଦ୍ୟାଧର ॥ ମଣ୍ଡାଇଲେ ପୁରମାନ ହୋଇଲେ ଆନନ୍ଦ । ସର୍ବ ଖର୍ବଖ ସ୍ୱର୍ଗେ କି ଉଦେ ଶାମ୍ବ ଚାନ୍ଦ ॥ କାନ୍ଥମାନଙ୍କେ ମାଣିକ୍ୟ ଚୂର୍ଣ୍ଣ ଲିପାଇଲେ । ନାନା ଚିତ୍ର ବିଚିତ୍ରରେ ଛାପରେ ଲେଖିଲେ ॥ ଚୂତପଲ୍ଲବ ତୋରଣ ବାନ୍ଧିଲେ ଦ୍ୱାରଦ୍ୱାରେ । ପ୍ରତିଦ୍ୱାରେ ସ୍ୱର୍ଣ୍ଣକୁମ୍ଭ ଥୋଇଲେ ଆନନ୍ଦେ ॥ ରତନ ବେଦୀ ଯତନ କରିଣ ସାଜିଲେ । ନୂତନ ବସନେ ଝୁମୁଣ୍ଡିଆ ମଣ୍ଡାଇଲେ ॥ ଝୁଲାଇଲେ ମାଣିକ୍ୟ ପ୍ରଦୀପ ଝଳକନ୍ତ । ତୋରଣ ଡୋର ବୈଦୂର୍ଯ୍ୟ ଦର୍ପଣ ଦିବ୍ୟ ଜ୍ୟୋତି ॥ ଝଳକନ୍ତ ଝାଲର ପନ୍ତି ପନ୍ତି ଖଞ୍ଜିଲେ । ବାସ ପୁଷ୍ପ ମାଳ ମାଳ ତାପରେ ରଞ୍ଜିଲେ ॥ ଛତ୍ର ବାସ ବୈରଖ ଝଣ୍ଟକ ଟେକେ ଲଜ । ପାଇଣ ପବନ ମଧ୍ୟେ ଲହରିଲେ ଗ୍ରହରାଜ ॥ ଝୁମୁଣ୍ଡିଆ ସ୍ତମ୍ଭମାନଙ୍କରେ ପାଟ ଡୋର । ବନ୍ଧାଇଲ ଶ୍ରଦ୍ଧା ଯୁକ୍ତେ ଇନ୍ଦ୍ରଙ୍କ କୁମର ॥ ନୂଆ ନୂଆ ଦର୍ପଣ ସେ ସଭାରେ କୋଟିଏ । ଗୋଟି ହୋଇବାରୁ ଘୋଟି ଜନମନ ମୋହେ ॥ ସ୍ୱାସ କେଶ କେଶ ସେହୁ ଚାନ୍ଦୁଆ ତଳକୁ । ଲମ୍ବିବାରୁ ନନ୍ଦେ ସିନ୍ଧୁ ଲହରୀ ଜଳକୁ ॥ ରତ୍ନ-ବେଦୀ ଚଉକଡ଼ ସହସ୍ରଦୀପାଳି । ପାଡ଼ିଲେ ହଂସତୂଳ ଶେଯ ତୁଳି ତ୍ୟୁସ

Digitized by PPRACHIN, SOA

ହୋଇ ॥ ସର୍ବ ଗନ୍ଧର୍ବ କରନ୍ତି ଶବଦେଯେନ ଗଲ । ମହାରାଜା ଇନ୍ଦ୍ର-
ଆଗତ ସମସ୍ତ କହିଲ ॥ ଶୁଣୁଥିଲେ ଶ୍ରୀକୃଷ୍ଣ ସେ ସଭାରେ ବସିଣ ।
ଡାକାଇଣ ଉଦ୍ଧବଙ୍କୁ କହନ୍ତି ହସିଣ । ଯାଅ ବାପୁ ଉଦ୍ଧବରେ
ଦ୍ୱାରକା ନଗର । ଯେଣେ ଆସ ରଥେ ଆଣ ସର୍ବ ନାରୀବର ॥ ଶୁଣି
ଉଦ୍ଧବ ଦ୍ୱାରକା ପୁରେ ଚଳିଗଲ । ରୁକ୍ମିଣୀ ସତ୍ୟଭାମାଙ୍କ ଆଗରେ
କହିଲ ॥ ସ୍ନାନ ଶୌଚ ହୋଇ କୃଷ୍ଣଙ୍କର ନାରୀଗଣେ । ବିଜେ
କଲେ ରେବତୀଙ୍କୁ ଘେନନ୍ତି ଗହ୍ଳତେ । ବଳଦେବୀ କାଳିନ୍ଦୀ ରୁକ୍ମିଣୀ
ସତ୍ୟଭାମା । ଅଷ୍ଟପାଟବଂଶୀ ସହ ବୃନ୍ଦାବତୀ ବାମା ॥ ମୁହୂର୍ତ୍ତେକେ
ନନ୍ଦନ ବନରେ ପ୍ରବେଶିଲେ । କୃଷ୍ଣ ପାଣ୍ଡବଙ୍କ ସଙ୍ଗେ ସ୍ୱର୍ଗପୁର
ଗଲେ ॥ ଆସିଲେ ଭୃଗୁ ଅଙ୍ଗିରା ସନକ ଅଗସ୍ତି । ମାର୍କଣ୍ଡେୟ
ଶୌନକ ଆଦିର ପୌଲସ୍ତି ॥ ଅଷ୍ଟବକ୍ର ମୁନି ସଙ୍ଗେ ବଶିଷ୍ଠ
କୌଶିକ । ପରାଶର ବ୍ୟାସଦେବ ଶୁକ ବାଲମିକ ॥ ବିଭାଣ୍ଡକ
ଋଷ୍ୟଶୃଙ୍ଗ ଗୌତମ ଜନକ । ଅଙ୍ଗିଆଦି ଋଷିମାନେ ଥିଲେକ
ଯେତେକ ॥ ରାଜଋଷି ବ୍ରହ୍ମଋଷି ନିବାହ ଉଚ୍ଛବେ । ପରବେଶ
ହେଲେ ଇନ୍ଦ୍ର ସଭାରେ ସମସ୍ତେ ॥ ବାଜିଲ ଢୋଲ ଦମା ଝମକ
ଶଙ୍ଖଭେରୀ । ଦୁନ୍ଦୁଭି ନାଦରେ ଉଛୁଳିଲ ସ୍ୱର୍ଗପୁରୀ ॥ ଏଥି-
କାଳେ ବରବେଶ କରିଣ ଶାମ୍ବଙ୍କୁ । ବିଜେ କରାଇଲେ ରତ୍ନବେଦୀ
ଉପରକୁ ॥ ଇନ୍ଦ୍ର ଆଜ୍ଞାରେ ଶୋଭାବତୀକୁ ଦାସୀଗଣେ । ବେଶ
କରାଇଲେ ବସାଇ ଦିବ୍ୟ ଆସନେ ॥ ରତନ ପାନିଆରେ ଶାମୁଳି
ଦେଇ କେଶ । ବାସ ତେଲ ଲଗାଇଲେ ହୋଇଣ ହରଷ ॥ ଜଠା
ବେଣୀ ଫଣୀ ଆକୃତରେ ଫୁଲଗଭା । ବ୍ୟାଳ ଚୂଳ କପାଳ ଆକାର
ଦିଶେ ଶୋଭା ॥ ଲୁଚିଛି ତହିଁ ଅଳକା ଦିଶେ ଲକ ଲକ । ଯୋଗୀ
ଯୋଗଭଙ୍ଗା ତାର ଶ୍ରୀମୁଖ ମୃଗାଙ୍କ ॥ କଣ୍ଠ ଦେଶେ ରୂପସର ତା
ମାଳେ ପଦକ । ଥିବାହୁ ବଳୟ ଜନ ମନେ ଦିଏ ଦକ ॥ ପୀନ
ପୟୋଧରେ ରଙ୍ଗ କାଳିଆ କାଞ୍ଚୁଲି । ଗଣ୍ଠିକୁ ବାନ୍ଧଥର ଘୋଟିବା
ଶୋଭା ହେଲା ॥ ସିଂହ କଟିରେ କିଙ୍କିଣି ଯେସନ ଦିଶଇ । ନବଣ୍ଟି
ପାରିବ କବି କଲ୍ପେ ବସିଥାଇ ॥

Digitized by PPRACHIN, SOA

# ଚୌପଦୀ

## ବେଶ ବର୍ଣ୍ଣନା

(ରାଗ—ରସକୋଇଲ )

ଘେନି ସହଚରୀ ଗୃହ ପାଶରେ, ହରିମଧ୍ୟାକୁ ବସାଇ ମଧ୍ୟରେ । ହରିଦ୍ରାକୁ ମାଖି ଉଳୁଟାଇଲେ, ଚନ୍ଦ୍ରିକା ଭ୍ରମରକୁ ଶଙ୍କାଇଲେ ଯେ । ଖଣ୍ଡନ କେଳେ ଅଞ୍ଜନ ଯେ । ରଞ୍ଜନ କରିଦେଲେ ଇନ୍ଦୁ ବଦନେ, ବନ୍ଦୁଏ ମାସ ଚନ୍ଦନ ଯେ । ୧ । କୁଚେ ବିଚିତ୍ର ପତ୍ରାବଳୀ ଲେଖି, ତା'ପରେ କାଞ୍ଚଲି ଭିଡ଼ିଲେ ତାଙ୍କି, କଟୀରେ କିଙ୍କିଣୀ କଣ୍ଠରେ ହାର, ବେଣୀ ଫଣୀ ଆକୃଷ୍ଟ ରମଣୀର ଯେ । କୁସୁମ ମାଳା କଠାଉ ଯେ । ଚିହ୍ନ କି ମନରେ ପ୍ରଣତ ହେଉଛି, କସି କରଜତ ବାନ୍ଧୁ ଯେ । ୨ । ବାଜୁବନ୍ଦ ସାଜୁଅଛି ଅଳସ, ବୁଝୁଛି ସମା ଥିରେ ଥିରେ ଆସ । ହେଉଛନ୍ତି କେ ଜାଣି କି ମନେ ମନେ । ବୁଝିଛି କେସ୍ବ ତନ୍ତ୍ର ସନ୍ନିଧାନେ ଯେ । ଆଜ ଅପୂଜକ ଶମ୍ଭୁ । ଧୂନ୍ଧୁଷ ପାଣି ପଦେ, ପୂଜା ପାଇବ ବୋଲି କି ମନରେ ଭାବୁ ଯେ । ୩ । ହସ୍ତ ହସ୍ତରେ କେ କାଚ ପିନ୍ଧାଇ, କହେ ଦଶାମ୍ବର ନହେବୁ ସଖି । ମନେ ରଖିଥିବୁ ଆମ୍ଭମାନଙ୍କୁ, ନୂତନେ ନଭୁଲି ପୁରାତନଙ୍କୁ ଯେ । ବସ୍ତ୍ର ବଳଭଦ୍ର କାନ୍ଥ ଯେ । ଓଣ୍ଟୁଲେ ଅଞ୍ଚଳ ଭରିକାଲେ ଦାସୀ, ମୁଖ ଭଣ୍ଡାମ ବଜାଇ ଯେ । ୪ ।

---

ପଦେ ପାଡଞ୍ଜଲି ମାର ମାର ବୋଲି ଧ୍ୱନି । କାଟିଲେ ବିରହୀ ଭୁବେକ ଜିବ ଜାବ ଘେନି ॥ ଏହପରି ସୁବେଶ କରାଇ ସହଚରୀ । ବୋଲ ଦେଲେ ଅଙ୍ଗେ-ଗନ୍ଧ ମିଶାଇ କସ୍ତୁରୀ ॥ ମୃଗ ମଦ ବାସିତ ବିବୁଧ ଦେଶ ବାଳୀ । ମିଶିବାରୁ କସ୍ତୁରୀ ଧାଇଲି ଦେହ ଝଲି ॥ ବେଶ ଶେଷ କରି ଦର୍ପଣକୁ ଦେଖାଇଲେ । ଗଣ୍ଡାଧରେ ଭ୍ରମରକୁ କାପରି ଲେଖିଲେ ॥ ପିନ୍ଧାଇଲେ ସୁକ୍ଷ୍ମୀନ ବସନ କରି କାଛି । ଉଭାହେଲା ଲଜ୍ଜା

ଲଗନକର ସଜବସ୍ତୀ ॥ ନକ୍ଷତ୍ର ମଧ୍ୟରେ ଶଶଧର ଶୋଭାପର । ଶୋଭାକୁ ପ୍ରକାଶିଲେ ଶୋଭାବତୀ ସୁନ୍ଦରୀ ॥ ପଶି ସମ୍ମୁଖରେ ରତ୍ନବେଦୀ ଉପରକୁ । ନେଲେ ସଦ୍ବଂଶଏ ଫୁଲାଇ ଦେଇ ନୁଳୁ ॥ ବସାଇଲେ ନେଇ ସୁରପତିଙ୍କ କୋଳରେ । ଶୁଭିଲ ଶଙ୍ଖଧ୍ୱନୀ କି ଶୁନ୍ଦର ସେ କାଳରେ ॥ ଗୋବିନ୍ଦ କୋଳରେ ଶାମ୍ବ କୁମର ବସିଲେ । ମୁନି-ଗଣେ ବେଦ ଉଚ୍ଚାର ବାକ୍ୟ ପଢ଼ିଲେ ॥ ହୁଳହୁଳି ନାଦେ ସ୍ୱର୍ଗ ପୁର ଚମକିଲା । ଏକାଳକୁ ହସ୍ତଗ୍ରନ୍ଥି ସମସ୍ତ ହୋଇଲା ॥ ଉଉତ୍ରୁକ ଦେଲେ ଇନ୍ଦ୍ର ନାନା ଅଳଂକାର । ଛନ୍ଦବାସ ରଥି ରଥ °ଆଳଠ ଗୁମର ॥ ରତ୍ନଥାଳ ସୁନାଙ୍କର ଗିନାନ୍ଧ ବସନ । ଗାଈ ସହସ୍ର ମାତଙ୍ଗ ତୁରଙ୍ଗ ସମାନ । ଗୋବିନ୍ଦ ମଧ ବନ୍ଧୁଙ୍କୁ ରତନ ଭୂଷଣ । ଦିନାଇଲେ ମଥାମଣି ଆନନ୍ଦେ ନେଇଣ ॥ କୃଷ୍ଣଙ୍କର ମହାଦେବୀ ଘାଟେଣ ଜଣେ ଜଣେ । ବନ୍ଧାଇଲେ ବରକନ୍ୟା ଜନେ ତୋଷମନେ ॥ କ୍ଷୀର ସମ୍ବଡରେ ସବ ସ୍ୱର୍ଗପୁର ନାରୀ । ବନ୍ଦାଇଲେ ବରକନ୍ୟା ହସ୍ତେ ଜଳଧର ॥ ଯୁଧିଷ୍ଠିର ଦୁର୍ଯ୍ୟୋଧନ କୌରବେ ପାଣ୍ଡବେ । କୃଷ୍ଣ ସୁତ ଯେତେଥିଲେ ଅର୍ପିଲେ ସରବେ ॥ ଏ ବିଧିରେ ବନ୍ଦାଶି ବିଧାନ ହେଲା ଶେଷ । ଅନ୍ତରେ ହୋଇଲେ ଛନ୍ଦୁ ସକଳ ପୁରୁଷ ॥ କୁଅ ଖେଳାଇଲେ ଅଦ୍ୟ ନାରୀମାନେ ମିଳି । ଥୋକେ ସୁନ୍ଦରୀଏ ଦେଉଛନ୍ତି ହୁଳହୁଳି ॥ ରମ୍ଭା ମେନକା ଉର୍ବଶୀ ତିଳୋତ୍ତମା ସଙ୍ଗେ । ମାଙ୍କନ୍ତି ନୃତ୍ୟ ଅପ୍ସରୀ ଗଣେ ରଙ୍ଗେ ॥ ବରକନ୍ୟାଙ୍କୁ ମଙ୍ଗଳ ମଣୋହ୍ର କରାଇ । ଭୁଞ୍ଜିଲେ ଇନ୍ଦ୍ର ଗୋବିନ୍ଦ ବାନ୍ଧବଙ୍କୁ ଘେନି ॥ କୌରବ ପାଣ୍ଡବ ଯାଦବ ଯେ ଦେବବୃନ୍ଦ । ଗନ୍ଧର୍ବ କିନ୍ନର ବିଦ୍ୟାଧର ଯକ୍ଷ ସିଦ୍ଧ ॥ ସକଳେ ଭୁଞ୍ଜି ବସିଲେ ସରଧା ହୋଇଣ । ହରଷିଲେ ଦେବଗଣ ହୋଇ ତୋଷମନ ॥ ଗଜା ଝିଲି ଲଡ଼ୁ ମାଖନପେଡ଼ା ରସକୋରା । ରସାବଳୀ ମତିଚୁରଲଡୁ ଗଦମ କାକରା । ମଦନମୋହନ ବିଳାସ ଅମାଲୁ ସରପୁଳି । ପାଟିରେ ପଡ଼ିବା କ୍ଷଣି ପେଟକୁ ଯାଏ ଗଳି ॥ ଖିର କ୍ଷୀରଚକ୍ରି ବ୍ୟଞ୍ଜନ ସାକର ବେଶ୍ବର ।

Digitized by PPRACHIN, SOA

ଡ଼ାଳି ଆମ୍ବିଳ ନଡ଼ିଆ ଚଟଣି ମହୁର ॥ ମଞ୍ଜାପାଚଡ଼ି ପୋଦନା ପତ୍ରରେ ପାଚିଡ଼ି । ବାଇଗଣ ପାଚଡ଼ିରେ ମିଶା ଫୁଲବଡ଼ି ॥ ରାସି କାକୁଡ଼ି ପାଚିଡ଼ି ସନ୍ତୁଳିତ ପନ୍ଦର । ପାଚିଡ଼ି ସଂଗ୍ରହ କରାଇଲେ ପୁରନ୍ଦର ॥ ଅଁଳା ଆଚାର ମୂଳା ଆଚାର ଠେଭ୍ରର । ଆଚାରଟି ସୋରିଷ ତେଲରେ ଢର ଢର ॥ ଆମ୍ବ ଲେମ୍ବୁ ଆଚାର ତେନ୍ତୁଳି ଆଚାରରେ । ହିଙ୍ଗୁ ମରିଚ ଗୁଣ୍ଡା ପୁରିଛି ସମାନରେ ॥ କରମଙ୍ଗା ଆଚାରଟି ସଭୁଠୁ ଅଧିକ । ଏ ଉତ୍ତାରୁ ଭଜା ମଜ୍ଜା ଶୁଣହେ ପାଠକ ॥ ଆଳୁ କାକୁଡ଼ି କଦଳୀ ବାଇଗଣ ଭଜା । ଏ ସର୍ବ ସମ୍ଭାର କରାଇଲେ ସ୍ୱର୍ଗ ରାଜା ॥ ବନ୍ଧୁ ବର୍ଗ ଘେନି ରାମ ଶ୍ରୀକୃଷ୍ଣ ଭୁଞ୍ଜିଲେ । ଆଚମନ ସାରି ମୁଖ ଶୁଦ୍ଧି କୁ ଲୋଡ଼ିଲେ ॥ ଗୁଆ ଗୁଜୁରାତି ପୁଷ୍ଟ ଖଇର ମିଶ୍ରିତ । ଚୂର୍ଣ୍ଣ ଗୁଣ୍ଡିରେ ତାମ୍ବୁଳ କରାଇ ପୂରିତ ॥ ପରଷିଲେ ପାଣ୍ଡବଙ୍କୁ ଦେବେ । ଭୁଞ୍ଜିଲେ ବଡ଼ଆ ପାନ ଯାଦବେ କୌରବେ ॥ ବିଦାୟ ମାଗିଣ ଋଷି ବହୁ ଚାଲିଗଲେ । ପୁତ୍ରବଧୂ ଘେନି ରାମ କୃଷ୍ଣ ବାହୁଡ଼ିଲେ ॥ ଶ୍ରୀକୃଷ୍ଣଙ୍କ ମହାତେଜ ଗଣେ ଜଣେ୨ । ବିଜେ କଲେ କ୍ଳେଶ ଭୁଲି ହୋଇଣ ଗାହଣେ ॥ ଇନ୍ଦ୍ର ସକଳ ଦେବଙ୍କୁ ସଙ୍ଗତରେ ଘେନି । ଯାଉଛନ୍ତି ଗଲେ ବାଜିକୁ କରି ବାଦ୍ୟଧ୍ୱନି ॥ ଏଥୁଅନ୍ତେ ଚଳିଲେ ପାଣ୍ଡବ ପାଞ୍ଚଭାଇ । ନିଜ ନିଜ ସଇନ୍ୟକୁ ଆଗରେ ଚଳାଇ ॥ ଦୁର୍ଯ୍ୟୋଧନ ଅନେଶ୍ୱର ଭ୍ରାତ ସଙ୍ଗତରେ । ପ୍ରବେଶ ହୋଇଲେ ଯାଇ ହସ୍ତିନା ନଗରେ ॥ ଯମଗଣ ରୁଦ୍ରଗଣ ଯେଝା ପୁରେ ଗଲେ । ଏଥୁଅନ୍ତେ ଶୁଣ ରାଜା ଅଗସ୍ତି କହିଲେ ॥ ଦୁର୍ଯ୍ୟୋଧନ ସୁତା କଲେ ଦୁର୍ଗାଷ୍ଟମୀ ବ୍ରତ । ସେ ଦିନୁ ଏ ବ୍ରତ ହେଲା ଜଗତେ ବିଖ୍ୟାତ ॥ ଶୋଭା ସଙ୍ଗତରେ ଶାମ୍ବ ବୀର ବିହରିଲା । ସୁଖେ ଏଣୁ ବାଧିରେ କେତେକ ଦିନ ଗଲା ॥ ମଧ୍ୟପର୍ବ ଚରିତ ଶୋଭାବତୀ ହରଣ । କହୁଛନ୍ତି ଅଗସ୍ତି ଶୁଣନ୍ତୁ ମନୁ ରାଣ ॥

Digitized by PPRACHIN, SOA

ମହାଭାରତ ଚରିତ ସୁଧାମୟ ବାଣୀ । ମୁକତ ଲଭ ସୁଜନେ କର୍ଣ୍ଣପୁଟେ ଶୁଣି ॥ ଶୁଣି ଶୁଣାଇଲେ ହୁଏ ଗୋଦାନର ଫଳ । ଅନ୍ଧ ନେତ୍ର ପାଏ ଶ୍ରେଷ୍ଠା ପାଏ ଗଡବଳ ॥ ଆହେ ସାଧୁଜନ ମୋର ନ ଧେନମା ଦୋଷ । ଆଜନ୍ମୁ ମୂରୁଖ ଜ୍ଞାନ ନାହିଁ ମୋର ଲେଶ ॥ କେବଳ କରୁଣାମୟ କରୁଣା କଟାକ୍ଷ । ଲକ୍ଷ କରି ଲେଖଇ ସାଧୁଙ୍କୁ ଲେଡ଼ି ପକ୍ଷ ॥ ଗଞ୍ଜାମ ଘୁମୁସର ବୁଗୁଡ଼ା ଗ୍ରାମେ ଥାଇ । ବଲରାମ ଗୋପ ବଳଭଦ୍ର ନାମ ବହି ॥ କଟାଉଛି କାଳ ମାତ୍ର ଜନ୍ମାଳ ମୂଳର । ଜୀବପ୍ରାଣେ ହେ ସୁଜନ ଦୋଷ କ୍ଷମାକର ॥ ନଜାଣଇ ପ୍ରପଞ୍ଚମ୍ୟ ନ୍ୟାୟାନ୍ୟାୟ କଥା । ସେଥିପାଇଁ ସାଧୁଜନ ପାଦେ ଲଦେ ମଥା ॥

—ସମାପ୍ତ—

ଟିକଲଗୁଣ୍ଠା, ଭବାନୀ ପ୍ରିଣ୍ଟିଙ୍ଗ୍ ଓ୍ୱାର୍କସରେ ଶ୍ରୀ ଭଗବାନ ମହାପାତ୍ରଙ୍କ ଦ୍ୱାରା ମୁଦ୍ରିତ ।

Digitized by PPRACHIN, SOA

# ବିଜ୍ଞାପନ

ଆମ୍ଭମାନଙ୍କଠାରେ ସମସ୍ତ ପ୍ରକାର ଓଡ଼ିଆ ପୁସ୍ତକ, ପୁରାଣ, ଛାନ୍ଦ, ଚୌପଦୀ ପ୍ରଭୃତି ମିଳେ । ସମସ୍ତ ପ୍ରକାର ମନୋହରୀ ଜିନିଷ ମଧ୍ୟ ଆମ୍ଭଠାରେ ମିଳେ । ବ୍ୟବସାୟୀମାନଙ୍କୁ ଉପଯୁକ୍ତ ଦରରେ ଯୋଗାଇଥାଉ । ଅଗ୍ରୀମ ସହ ଅର୍ଡର ଦିଅନ୍ତୁ ।

---

| | | | |
|---|---|---|---|
| ରୁକ୍ମିଣୀ ହରଣ | ଟ° ।୵ | ଦ୍ୱାରବତୀ ହରଣ | ଟ° ।୵ |
| ଚନ୍ଦ୍ରକଳା ହରଣ | ଟ° ୳ | ମଦନାବତୀ ହରଣ | ଟ° ୳ |
| ସଚଳା ହରଣ | ଟ° ।୶ | ଚନ୍ଦ୍ରାବତୀ ହରଣ | ଟ° ।୶ |
| ବୃନ୍ଦାବତୀ ହରଣ | ଟ° ୳ | ପୂର୍ଣ୍ଣିମା ଓଷା | ଟ° ୵୬ |
| ସୂର୍ଯ୍ୟକାନ୍ତ ହରଣ | ଟ° ୳ | ପଶାଖେଳ | ଟ° ୵୬ |
| ମାଳନ୍ଦ୍ରୀ ହରଣ | ଟ° ୳ | ଉଷା ହରଣ | ଟ° ୶ |
| ବିଧୁର ମୋହିନୀ ହରଣ | ଟ°।୶ | ଚନ୍ଦ୍ରସେନ ହରଣ | ଟ° ୳ |
| ସୁରେଖା ହରଣ | ଟ°୳ | ଗୋବିନ୍ଦ ବଧ | ଟ° ୳ |
| ସୁଭଦ୍ରା ହରଣ | ଟ° ୳ | ଲକ୍ଷ୍ମୀପୁରାଣ | ଟ° ।୵ |
| ମହୀରାବଣ ବଧ (ଗୀତାଭିନୟ) | ଟ° ୳ | | |
| ସୀତା ହରଣ (ଗୀତାଭିନୟ) | ଟ° ୳ | | |

ଟୀକାଗୋବିନ୍ଦଚନ୍ଦ୍ର ଟ °୳; ଗୁଟେଶାଳପାଠ ଟ °୳; ଟିକାରାମାୟଣ ଟ °୴, ବଳଙ୍କା ରାମାୟଣ ଟ ୧।; ବର୍ଣ୍ଣବୋଧ ଟ ° ।୵; ପ୍ରଭାତ-ଅବକାଶ ଟ °୶; କଟୁବେରୀ ଟ°୵; ଗୁଣ୍ଡିଚ୍ଛପତ୍ର ଟ °୵




Digitized by PPRACHIN, SOA